# ଯେପରି ଇଚ୍ଛା ତେପରି ଯା'



ଡ. ଶ୍ରୀଚରଣ ମହାନ୍ତି

**ଯେଣେ ଇଚ୍ଛା ତେଣେ ଯା'**

ଲେଖକ :

**ଡ଼. ଶ୍ରୀଚରଣ ମହାନ୍ତି**

ପ୍ରକାଶକ :

**କୋଣାର୍କ ପବ୍ଲିଶର୍ସ୍**

ତୁଳସୀପୁର, କଟକ

ପ୍ରଥମ ପ୍ରକାଶ : **୨୦୦୯**

ମୁଦ୍ରଣ :

**କୋଣାର୍କ ପ୍ରିଣ୍ଟର୍ସ୍**

କଟକ

ମୂଲ୍ୟ : **ଟ. ୨୫.୦୦ (ପଚିଶ ଟଙ୍କା ମାତ୍ର)**

# 'ଯେଣେ ଇଚ୍ଛା ତେଣେ ଯା'

ଗାଁ ଟିଏ । ସେ ଗାଁର ପୂର୍ବ ପାଖରେ ଛୋଟିଆ ନଈଟିଏ କୁଳୁକୁଳୁ ଗୀତ ଗାଇ ଗାଇ ବହି ଚାଲିଛି । ପଶ୍ଚିମ ପାଖରେ ଫସଲ କ୍ଷେତମାନ ଲମ୍ବି ଯାଇଛି କାହିଁ କେତେ ଦୂରକୁ । ଉତ୍ତରଦିଗରେ ବି ବିରାଟ ଗୋଟିଏ ମାହାରା । ମାହାରାଟି ଆସି ସେ ଛୋଟ ନଈରେ ପଡ଼ିଛି । ମାହାରା ଆର ପଟରେ ଖାଲ ଖମାଭରା ଗୋଟିଏ ପଡ଼ିଆ । ଗାଁ ଦୁଇମୁଣ୍ଡରେ ଦୁଇଟି ବର ଅଶ୍ୱତ୍ଥ ଗଛ ।

ଛୋଟିଆ ଗାଁଟିଏ । ଏ ମୁଣ୍ଡରେ ଫୁଟଣ ଫୁଟିଲେ ସେ ମୁଣ୍ଡକୁ ବାସେ । ଏ ମୁଣ୍ଡରେ ଶାଶୁଟିଏ ବୋହୂ ସାଙ୍ଗରେ କଳିକଲେ, ସେ ମୁଣ୍ଡକୁ ଶୁଭେ । ଛୋଟ ପିଲାମାନେ ଲୁଚକାଳି, ବୋହୂଚୋରି ଖେଳିଲାବେଳେ ଗାଁର ଚଉହଦି ବୁଲି ଆସନ୍ତି । ଏ ମୁଣ୍ଡରେ କଅଁଳା ପିଲାଟା କୁଆଁ କୁଆଁ କଲେ ସେ ମୁଣ୍ଡ ଲୋକ ଶୁଣି ପାରନ୍ତି । ଏମିତି ଛୋଟିଆ ଗାଁଟିଏ । ପାଖରେ କୌଣସି ଗାଁ ନ ଥିବାରୁ, ଏ ଗୋଟିଏ ଗାଁ ବୋଲି ଲୋକେ କହନ୍ତି ନ ହେଲେ ବଡ଼ଗାଁର ଛୋଟ ପଡ଼ାଟିଏରୁ ମଧ୍ୟ ସାନ ।

ନିଜ କ୍ଷେତରେ ସମସ୍ତେ କାମ କରନ୍ତି । ବରଷ ସାରା କାମରେ ଲାଗିଥାଆନ୍ତି । ଚାଷ କରିବା,ଫସଲ ଲଗାଇବା,ଫସଲ ଅମଳ କରିବାରେ ଦିନ ବିତି ଯାଏ । ପର୍ବପର୍ବାଣି ଦିନରେ କାମଧନ୍ଦା ଛାଡ଼ି ସମସ୍ତେ ଉତ୍ସବରେ ମାତି ଯାଆନ୍ତି । ଉତ୍ସବ ସରିଗଲେ ନିଜ କାମରେ ନିଜେ ଲାଗିଯାଆନ୍ତି । ଚାଷକାମ କରୁ କରୁ ଯଦି କାହାର ବଳଦ ବେମାର ପଡ଼ିଲା,କି ବଳଦ କାମକୁ ପାରୁ ନାହିଁ ସେ ଅନ୍ୟ ଲୋକଙ୍କଠାରୁ ବଳଦ ମାଗିଆଣି କାମ ଚଳାଇ ନିଏ । ଜଣେ ହାଟ ବଜାର ଗଲେ, ଆଉ ଦୁଇଲୋକର ସଉଦା ନେଇ ଆସେ । ପର୍ବପର୍ବାଣିରେ ଅସୁବିଧାରେ କେହି ପିଠାପଣା ନ କଲେ ଅନ୍ୟମାନେ ପିଠାପଣା ଆଣି ତା ଘରେ

ଠୁଳ କରି ଦିଅନ୍ତି । ପିଲାମାନେ ଖେଳ ଖେଳୁ ଖାଇବା ବେଳ ହୋଇଗଲେ, ନିଜ ପିଲା ସାଙ୍ଗରେ ଆଉ ତିନୋଟି ପିଲା ମଧ୍ୟ ଖାଇ ପିଇ ଚାଲି ଯାଆନ୍ତି । ଏମିତି ସୁରୁଖୁରୁରେ ଗାଁଟି ଚାଲିଥାଏ । ଲୋକମାନେ ଅଳସୁଆ ନୁହନ୍ତି କି କଳିହା ନୁହନ୍ତି । ବୁଢ଼ାବୁଢ଼ୀଙ୍କ କଥା ମାନି ନିଜ ଭିତରେ ଥିବା କଳିକଜିଆ ତୁଟାଇ ଦିଅନ୍ତି ।

ଏଇ ଗାଁରେ ପହଞ୍ଚିଲା ଲୋକଟିଏ । ସାଥିରେ ତା'ର ସ୍ତ୍ରୀ, ଦୁଇ ପୁଅ ଆଉ ଚାରି ଝିଅ । ଲୋକଟି ଅଳସୁଆ ଆଉ ସ୍ତ୍ରୀଟି କଳିହୁଡ଼ି । ପିଲାମାନେ ବାପମା'ଙ୍କର ଗୁଣରୁ କିଛି କିଛି ଆଣିଛନ୍ତି । ଲୋକଟିର ବାପ ଏଇ ଗାଁର ଚାଲିଚଳନ ଆଉ ଫସଲର ସୁବିଧା ଦେଖି, ଅଧ ଏକର ଜମିର ଡିହବାଡ଼ିଟିଏ କିଣିଥିଲା । ସେ ଲୋକର ବାପ ମରିଯିବା ପରେ, ତା' ନିଜଗାଁ ଲୋକଙ୍କ ସହିତ ଭଲ ପଡ଼ିଲା ନାହିଁ । କଥାରେ କହନ୍ତି-'ସାତ ହଳିଆର ଏକ ହଳିଆକୁ ବି ଭରସା ।' ଗାଁ ଗଣ୍ଡାରେ ସହଯୋଗ ନ ରଖିଲେ ଚଳିବା କଷ୍ଟ । ଏ ଲୋକଟି ଖାଲି ନେଇ ଜାଣେ, କାହାକୁ କିଛି ଦେଇ ଜାଣେ ନାହିଁ ।

ତା' ପରେ ନିଜ ଗାଁର ସମସ୍ତ ଜମିବାଡ଼ି ବିକ୍ରି କରି ଏଇ ଗାଁକୁ ଉଠି ଆସିଲା । ପିଲାପିଲିଙ୍କୁ ସାଙ୍ଗରେ ଆଣି ଚାଳିଆ ଘରଟିଏ କରି ରହିଲା । ଏ ଲୋକର ପିଲାମାନେ ଗାଁର ଅନ୍ୟ ପିଲାଙ୍କ ସହିତ ମିଶି ପାରନ୍ତି ନାହିଁ । ଟିକେ ଟିକେ କଥାରେ କଳିଗୋଳ କରନ୍ତି,ମାଡ଼ଗୋଳ କରନ୍ତି । ଲୋକଟି ନିଜର ଜମିବାଡ଼ି ବିକି ଦେଇ ଆସିଥିବାରୁ ହାତରେ ବେଶ କିଛି ପଇସାପତ୍ର ଥାଏ । ଏଠାକୁ ଆସି ଆଉ ଜମି ବାଡ଼ି କିଣିଲା ନାହିଁ,ଜମିବିକା ଟଙ୍କାକୁ ଅଭାବ ଅସୁବିଧାରେ ପଡ଼ିଥିବା ଲୋକମାନଙ୍କୁ ଖୁବ୍ ଚଢ଼ା ସୁଧରେ କରଜ ଦେଲା । ବେଶ୍ ମଉଜ ମଜଲିସ୍‌ରେ ଦିନ କାଟିଲା ।

ମାଟି ମା'ସାଙ୍ଗରେ ମିଶି ମାଟି ହେଲେ ସିନା ମାଟି ମା'ଖାଇବାକୁ ଦେବ । ମାଟିରୁ ସୁନା ଫଳିବ । ଉଦ୍‌ଯୋଗୀ ଟାଙ୍ଗର ଭୂଇଁରେ ବି ଫସଲ ଫଳାଏ,ମାତ୍ର ଅଳସୁଆର ଭରାଫସଲ କ୍ଷେତ ବି ଉଜୁଡ଼ିଯାଏ । ଗାଁର ଲୋକମାନେ କ୍ଷେତକୁ

କାମ କରିବାକୁ ଗଲାବେଳେ ଏ ଲୋକଟି ବେଶ୍ ଥଟ୍ଟା ପହଲି କରେ । ଏଇଗାଁକୁ ଆସିଲା ପରେ କିଛି ଜମିବାଡ଼ି କିଣି ନଥିବାରୁ, ନିଜର ତ କିଛି କାମଦାମ ନ ଥାଏ, ସାଙ୍ଗରେ ଆଣିଥିବା ଧନରେ ଦିନକୁ ଛ' ତିଅଣ ନ' ଭଜା କରି ଖାଏ । କୁଟା ଖଣ୍ଡକୁ ଦି'ଖଣ୍ଡ କରେ ନା । ବାପ ମା' ଗୁଣ ନେଇ ପିଲାମାନେ ମହାଅଳସୁଆ, ଚୁଗୁଲିକୁ କାନ ଡେରନ୍ତି ।

ଗାଁର ପିଲାମାନେ ପାଠଶାଳାକୁ ପାଠ ପଢ଼ିବାକୁ ଯାଆନ୍ତି, ଏ ଲୋକର ପିଲାମାନେ ମଉଜ କରି ଖେଳରେ ମାତନ୍ତି । ଦିନଯାକ କଙ୍କି, ପ୍ରଜାପତି ଧରନ୍ତି, ଗଛରେ ଚଢ଼ି ମାଙ୍କଡ଼ ଘଉଡ଼ାନ୍ତି, ବୁଲି ବୁଲି ମାଙ୍କଡ଼କୁ ଟେକା ମାରନ୍ତି, ଛୋଟ



ନଈଟିରେ ବୁଡ଼ି ପାଣି ଗୋଳିଆ କରନ୍ତି । ଗାଁକୁ କେହି ଛୋଟା କେମ୍ପା ଭିକାରୀ ଆସିଲେ, ତାକୁ ଥଟ୍ଟା ପରିହାସ କରନ୍ତି । ଗାଁ ବୁଢ଼ାମାନେ ଏ ସବୁ ଦେଖିଲେ ଆକଟ କରନ୍ତି, ସେ ପିଲାମାନେ ମାନନ୍ତି ନାହିଁ । ତେଣୁ ଗାଁ ଲୋକମାନଙ୍କର ଏ ପିଲାଙ୍କ ପ୍ରତି ଆଦର ନ ଥାଏ ।

କଥାରେ କହନ୍ତି, ବସି ଖାଇଲେ ନଈବାଲି ସରେ । ଏ ଲୋକଟିର ଅଳସୁଆମି ସାଙ୍ଗରେ ଖରାପ ଅଭ୍ୟାସ ସବୁ ବଢ଼ି ବଢ଼ି ଚାଲିଥାଏ । ପାନବଟୁଆ ହାତରୁ ଛାଡ଼େ ନାହିଁ । ଘର ଦୁଆର ପାନପିକ ଆଉ ପାନ ଖଦଡ଼ାରେ ଅପରିଷ୍କାର ହୋଇଯାଏ । ପାନ ଭାଙ୍ଗିଲାବେଳେ ଚୂନ ହାତ କାନ୍ଥ କବାଟ, ଆଉ ଘର ଖୁଣ୍ଟରେ ବୋଳି ଘରଟାକୁ କଦର୍ଯ୍ୟ ଭାବରେ ଚିତ୍ର ବିଚିତ୍ର କରିଥାଏ । ପାନ ସାଙ୍ଗରେ ଲୋକଟିର ବିଡ଼ି ଅଭ୍ୟାସ ବି କମ୍ ନୁହେଁ, ବିଡ଼ିଖିଆମାନଙ୍କର ଗୋଟିଏ କଦର୍ଯ୍ୟ ଅଭ୍ୟାସ ଅଛି ଯେ, ସେମାନେ ଅଧାଖିଆ ବିଡ଼ିକୁ କାନରେ ଖୋସି ଦିଅନ୍ତି, ଆଉ ଘର ବାହାର ସବୁଆଡ଼େ ଖାଲି ଖଣ୍ଡିଆ ବିଡ଼ିରେ ଭର୍ତ୍ତି କରି ଦିଅନ୍ତି । ଏବେ



ଲୋକଟି ପାନ, ବିଡ଼ିସାଙ୍ଗକୁ ଗଞ୍ଜେଇଅଭ୍ୟାସ କଲାଣି । ଗଞ୍ଜେଇ ଖାଇଦେଲେ ଲୋକଟି 'ଆକବର ବାଦଶାହ'ଙ୍କଠାରୁ ବି ନିଜକୁ ବଡ଼ ମନେ କରେ ।

ବର୍ଷା ଦିନେ ଗାଁ ଲୋକମାନେ ସକାଳୁ ସକାଳୁ ବାଡ଼ି ବଗିଚାରେ କାମକରନ୍ତି । କଅଁଳ ଗାଧୁଆ ବେଳକୁ ପଖାଳ ଖାଇସାରି, ଛୋଟିଆ ଧୋତିଟିଏ ପିନ୍ଧି, କରିଆଟିଏ କାନ୍ଧରେ ପକାଇ ହାତରେ ଦା'ବାଡ଼ି ଧରି, କ୍ଷେତକୁ ବାହାରି

ପଡ଼ନ୍ତି । ଗାଁ ଦାଣ୍ଡରେ ଯାଉଥିବା ଲୋକମାନଙ୍କୁ ଦେଖି, ଏ ଲୋକଟି ଗଞ୍ଜେଇ ନିଶାରେ ଗୋଟିଏ ତୃପ୍ତିର ହସହସି କୁହାଟଟାଏ ମାରି ଦିଏ । ପ୍ରଳାପ କଲାପରି ଖୁବ୍ ବଡ଼ବଡ଼ ପାଟିରେ କେତେ କ’ଣ ବକି ଚାଲେ । କ୍ଷେତକୁ ଯାଉଥିବା ଲୋକମାନେ,ଏ ଲୋକଟିର ରୀତିକୁ ଦେଖି ଗୋଟାଏ ଦରଦଭରା ଚାହାଣିରେ ଚାହିଁ ଚାଲି ଯାଆନ୍ତି ।

କିଛି ଦିନ ବିତିଗଲା । ହାତରେ ଥିବା ଧନ ପାଣିସୁଅ ପରି ବହିଗଲା । ପାଣି ପବନକୁ ଛାଡ଼ିଦେଲେ ସବୁ ଏଠାରେ କିଣିବାକୁ ପଡ଼େ । ବାଡ଼ିରେ ଶାଗ ପଟାଳିଟାଏ ଅବା ଲଙ୍କାଗଛଟିଏ ବି ଲଗା ହୋଇନି । ଅଧ ଏକର ବାଡ଼ିଟି ପଡ଼ିଆ ପଡ଼ିଛି । ତା’ପରେ ଲୋକଟିର ମନରେ ଗୋଟାଏ ମିଛ ଅହମିକା ଅଛି ଯେ, ସେ ହିଁ କେବଳ ଏ ଗାଁରେ ପଇସାବାଲା । ତେଣୁ ଛୋଟମୋଟ ଜିନିଷଟିଏ ମାଗିଆଣି ଚଳେଇ ନେବାକୁ ସେ ଲୋକଟି ପସନ୍ଦ କରେ ନାହିଁ । ଏଇ ଗାଁରେ ଲୋକମାନେ ସହଯୋଗ କରି ପରସ୍ପର ଯେଉଁ କାମ କରନ୍ତି, କି ମାଗିଯାଚି ଚଳି ଯାଆନ୍ତି, ସେ ସବୁ କାମକୁ ଏ ଲୋକଟି ଭାବେ ଛୋଟଲୋକି । ମାଗିଖିଆ ଗୁଣ । ଏକେ ତ ଲୋକଟି ପାଠଶାଠ ପଢ଼ିନି, ପୁଣି ଅଜ୍ଞତା ତା ମନରେ ବସା ବାନ୍ଧି ରହିଚି ।

ଏ ଗାଁରେ ଥିବା ରାତିପାଠଶାଳାକୁ ସଞ୍ଜବେଳେ ଚାଷୀମାନେ ପାଠ ପଢ଼ିବାକୁ ଗଲାବେଳେ, ଲୋକଟି କହୁଥିବାର ଶୁଣାଯାଏ -

‘ଦେଖ ହେ ଅଲାଜୁକଗୁଡ଼ାଙ୍କୁ-
ବୁଢ଼ାଦିନେ ପାଠ ପଢ଼ି ଏ ଗୁଡ଼ା ହାକିମ ହେବେ ।’

ତା’ ପରେ ଚାଲେ କେତେ ପହଲି । ପିଣ୍ଡା ଉପରେ ପଡ଼ିଥିବା ଛିଣ୍ଡାମଶିଣା ଉପରେ ବସି ଲୋକଟି ଜଙ୍ଘରେ ଥାପଡ଼ ମାରି ମାରି କେତେ କଥା କହି ଚାଲେ ।

ମାଗିବା ଆଉ ଲାଗିବା ଦୁଇଟା ଜିନିଷ ଏ ଲୋକଟିର ନାହିଁ । ଲୋକଟି ମନରେ ଭାବେ, ସୋମବାର ଗୁରୁବାର ହାଟ ପାଳି । ହାଟରୁ ପରିବାପତ୍ର,ତେଲ ଲୁଣ କିଣିଦେଲେ ତ ବେଶ୍ ଆରାମରେ ଦିନ କଟି ଯାଉଛି,ତେଣୁ କାଦୁଅ-ମାଟି ହୋଇ ବିଲ ବାଡ଼ିରେ ଖଟିବା କି’ ଦରକାର ? ଲୋକଟି ଆଗ ପଛ କିଛି ନ

ଭାବି ଖର୍ଚ୍ଚ କରି ଚାଲିଥାଏ । ତା'ର ହିସାବ ପତ୍ର କିଛି ନ ଥାଏ । ସ୍ତ୍ରୀ ଟି କଳିହୁଡ଼ି ହେଲେ କ'ଣ ହେବ, ସାମାନ୍ୟ ଆଗପଛ ଭଲ ମନ୍ଦ ବିଚାର କରେ । ଭଲରେ ମନ୍ଦରେ ପୁରୁଷକୁ କିଛି ପରାମର୍ଶ ଦେବାକୁ ଚେଷ୍ଟା କଲେ,ଲୋକଟିର ଫୁତ୍କାରରେ ତା'ର ସବୁ ପରାମର୍ଶ ପବନରେ ମିଶିଯାଏ ।

ନୂଆ ଗାଁକୁ ଆସିବାର ପାଖାପାଖି ଦୁଇ ବରଷ ହୋଇଗଲାଣି । କୌଣସି ଆୟ ନାହିଁ । ଖର୍ଚ୍ଚରେ ବି କୌଣସି କଟକଣା ନାହିଁ । କ୍ରମେ ଲୋକଟିର ବାଦଶାହୀ ମନର ଖର୍ଚ୍ଚ କମି କମି ଆସିଲାଣି । ଆଗ ଦିନରେ ହେଉଥିବା ଖର୍ଚ୍ଚ କମି କମି ଏବେ ଘରେ କଳିଗୋଳ ଲାଗିବା ଆରମ୍ଭ ହେଲାଣି । ନିତି ନିତି କିଣା ହେଉଥିବ ମାଛ କି ମାଂସ କମି କମି ଡାଲି ଶାଗ ଭଜା ବାଟ ଦେଇ,ଏବେ ପଖାଳ ଭାତ ଲୁଣ ପିଆଜରେ ପହଞ୍ଚିଲାଣି । ଗଞ୍ଜାଇ-ନିଶା ଛାଡ଼ି ଯିବା ପରେ ଲୋକଟି ମୁଣ୍ଡରେ ଏବେ ଚିନ୍ତା ପଶିବା ଆରମ୍ଭ ହେଲାଣି । ସେ ଚିନ୍ତାକୁ ଭୁଲିବାକୁ ଲୋକଟି ଆହୁରି ଦମେ ଗଞ୍ଜାଇ ଟାଣି ଦିଏ ।

ଦିନେ ଅଳସୁଆ ଲୋକଟିର ମୁଣ୍ଡରେ ଢୁକିଗଲା ଯେ ଏ ଗାଁଟା ଭଲ ନୁହେଁ । ଏ ଲୋକଗୁଡ଼ାକ କେହି ଭଲ ନୁହନ୍ତି । ଆଉ କେଉଁ ଗାଁକୁ ଉଠିଗଲେ ଭଲ ହେବ । ତା'ପରେ ଘର ଡିହଟି ବିକ୍ରି କରି ଦେବାପାଇଁ ସେ ଗରାଖ ଖୋଜିଲା । ଘରଡିହଟିକୁ ନ ବିକିବା ପାଇଁ ସ୍ତ୍ରୀ ଲୋକଟି କେତେ ନେହୁରା ହେଲା । କେତେ ପ୍ରକାର ବୁଝାଇଲା ତଥାପି ଲୋକଟି ବୁଝିଲା ନାହିଁ ।

ସକାଳୁ ରାତି ଦି'ଘଡ଼ି ଯାଏ ବାଇଆ କୁକୁର ପରି ଖାଲି ବୁଲିଲା । ବୁଲି ବୁଲି ଖାଲି ଗରାଖ ଖୋଜିଲା । ଡିହଟି କୌଣସିପ୍ରକାରେ ବିକ୍ରି ହୋଇପାରିଲା ନାହିଁ । ଆଗ ଗାଁରୁ ଛାଡ଼ିଆସିଲା ବେଳେ, ଲୋକଟି ଅନେକ ପଇସାପତ୍ର ଆଣିଥିଲା । ଆଉ ଏ ଗାଁ ଛାଡ଼ିବା ବେଳକୁ, ଅଧ ଏକର ଡିହଟିକୁ ଛାଡ଼ି ଦେଲେ,ଆଉ ବିଶେଷ କିଛି ନ ଥିଲା,ତା' ବି ବିକ୍ରି ହୋଇପାରିଲା ନାହିଁ । ଡିହ ବିକ୍ରି ନ ହେବାରୁ ଲୋକଟି ଗାଁବାଲାଙ୍କ ଉପରେ ଭୀଷଣ ରାଗିଗଲା । ଆକୁ ତାକୁ ଦେଖାଇ ଶୁଣାଇ ଖାଲି ଗାଳି ଦେଲା ।

-୦-

## ଦୁଇ

ଦିନେ ଲୋକଟି ଘରେ ତାଲା ପକାଇ , ସ୍ତ୍ରୀ ଆଉ ପିଲାପିଲିଙ୍କୁ ଧରି ଦୂର ଗାଁର ବନ୍ଧୁ ଘରେ ଯାଇ ପହଞ୍ଚିଲା । ଲୋକଟିର ସେ ମଉସା ଘର । ଅନେକ ଦିନ ଆଗରୁ ତାଙ୍କ ଘର ସହିତ ଯିବା ଆସିବା ସମ୍ପର୍କ ନ ଥିଲେ ବି , ସେମାନେ ବେଶ୍ ଆଦରଯତ୍ନ କଲେ ।

ମଉସାଙ୍କ ଘରେ ଦିନେ ଦୁଇଦିନ ରହିଲା ପରେ, ଲୋକଟି ମଉସାଙ୍କୁ ସବୁ କଥା ଖୋଲି କରି କହିବାକୁ ମନ କଲା । ଯୋଗକୁ ଦି'ପହର ଖିଆପିଆ ସରିଲା ବେଳେ,ମଉସା ବାରଣ୍ଡାରେ ପଡ଼ିଥିବା କାଠବେଞ୍ଚ ଉପରେ ବସିଥା'ନ୍ତି । ଲୋକଟି ଯାଇ ମଉସାଙ୍କ ପାଖରେ ବସିଲା,କଥା ପଡ଼ିଲା ପରେ ଉଠି ଆସିଥିବା ଗାଁ ଆଉ ନିଜର ପ୍ରଥମ ଗାଁ କଥା ବି ପଡ଼ିଲା ।

ଲୋକଟି କହିଲା-''ମଉସା, ଆଉ ସେ ଲୋକମାନଙ୍କ କଥା କୁହନା । ଲୋକଗୁଡ଼ାକ ଏତେ ନିକୁଛିଆ,ଏତେ କୁତୁରୁପିଆ, ଏତେ ହିଂସୁକୁଟିଆ ହେଲେଣି, ତାଙ୍କ ପାଖରେ ଚଳିବା କଷ୍ଟ । ସେଇଥିପାଇଁ ପରା ମୁଁ ଝିମାଣି ଗାଁ ଛାଡ଼ି ଓସ୍ତିଆ ଗାଁକୁ ଉଠି ଆସିଲି । ହେଲେ ଏ ଗାଁଟା ବି ନିହାତି ଛୋଟ ଲୋକଙ୍କର ଗାଁ । ଦିନ ନାହିଁ ରାତି ନାହିଁ ଲୋକଗୁଡ଼ାକ ଖାଲି ଗଧ ଗୋରୁ ପରି ଖଟୁ ଥିବେ । ମେଣ୍ଢାପଲ ପରି ମେଳା ମଉଛବରେ କାମଦାମ ଛାଡ଼ି ଗୋଟାଏ ଜାଗାରେ ଆସି ରୁଣ୍ଡ ହୋଇଯିବେ । ଆମ ଗାଁଟା ତ ଭଲନୁହେଁ,ମୁଁ ଯେଉଁ ନୂଆ ଗାଁକୁ ଉଠି ଆସିଛି,ସେ ଗାଁ ବି ଭଲ ନୁହେଁ, ସବୁ ଲୋକଗୁଡ଼ାକ ଯାବତୀୟ ଛୋଟ ଲୋକି। ପାଜି ବଦ୍‌ମାସ ।''

ମଉସା ଏତେବେଳ ପର୍ଯ୍ୟନ୍ତ ଚୁପ୍‌ଚାପ୍ ବସି ସବୁ କଥା ଶୁଣୁଥିଲେ । ଏବେ ଆଉ ଥିରି ହୋଇ ବସିପାରିଲେ ନାହିଁ। ଏଥର ମଉସା ତୁଣ୍ଡ ଖୋଲି କହିଲେ -

''ବାପ ବୃନ୍ଦାବନ, ଅନେକ ଦିନ ହେଲା ସିନା ତୁମର ଆମର ଗତାଗତ ନାହିଁ ଖୋଜାଲୋଡ଼ା ନାହିଁ, ହେଲେ ମୁଁ ତମର ସବୁ ଖବର ଟିକିନିଖି କରି ଲୋକମାନଙ୍କଠାରୁ ବୁଝି ରଖିଛି ।

ଏବେ ତମେ ଯେତେ କଥା କହିଗଲ ମୁଁ ସବୁ କଥା ବି ମନ ଦେଇ ଶୁଣିଛି । ବାପ, ଜାଗାର ଦୋଷ ନୁହେଁ କି ଲୋକଙ୍କର ଦୋଷ ନାହିଁ । ନିଜେ ପରିଶ୍ରମ କଲେ ଦେବତା ପ୍ରସନ୍ନ ହେବେ । ଘର ହସି ଉଠିବ । ଦେହବଳ ଖଟାଇଲେ ମନବଳ ବଢ଼ିବ । କାମ ନ କଲେ ଲକ୍ଷ୍ମୀ ଛାଡ଼ିଯିବେ । ମଣିଷ ଲକ୍ଷ୍ମୀଛଡ଼ା ହୋଇ ଯିବ । ହତଶିରି ହୋଇଯିବ ।''

ମଉସା ପୁଣି କହିଲେ - ''ବାବୁରେ,

ଯେଣେ ଇଚ୍ଛା ତେଣେ ଯା'
କରମ ଘେନି ବୁଲୁ ଥା ।''

ଜାଗାର ଦୋଷ ନାହିଁ, ଯେଉଁଠି କାମ କରିବୁ ସେଇଠି ଖୁସିରେ ରହିବୁ । ମଉସା ବୁଢ଼ା ନିଜର ଘରକୁ ଲାଗି ରହିଥିବା ବାଡ଼ି-ବଗିଚା ଦେଖାଇ କହିଲେ ''ଏଇ ବାଡ଼ିଟି ମୋର ସମ୍ପତ୍ତି । ଏଥିରେ ମୁଁ ବର୍ଷସାରା ଫସଲ ଲଗାଇ ଥାଏ ।



ବଗିଚା ମଝିରେ ଖୁବ୍ ଗଭୀର କରି ପୋଖରୀଟିଏ ଖୋଳିଛି । ଏଥିରେ ବର୍ଷସାରା ପାଣି ଥାଏ । ତେଣୁ ବର୍ଷକ ଯାକ ବିଭିନ୍ନ ପନିପରିବା ଲଗାଇ ବାଡ଼ିରେ ହସ ଖେଳାଇଦିଏ । ପରିବା ବେପାରୀମାନେ ଆସି ପଇସା ଦେଇ ଘରୁ ପରିବାପତ୍ର ନେଇ ଯାଆନ୍ତି ।

ହେ'ଇ ସେ ପାଖକୁ ଦେଖ, ପଟାଳି ପଟାଳି ଶାଗ ପଡ଼ିଛି । ବର୍ଷର ସବୁ ସମୟରେ ନାନା କିସମର ଶାଗ ମୁଁ ବେପାରୀମାନଙ୍କୁ ଯୋଗାଇ ଦିଏ । ଆଉ ଏ ଉତ୍ତର ପାଖକୁ ଯେଉଁ ଘରଟି ଦେଖୁଛ,ସେ ମୋ'ର ଗାଈ ଗୁହାଳ । ଦୁଇଟି ଜର୍ସି ଗାଈ କିଣିଥିଲି, ସେ ଦୁଇଟିରୁ ଯେଉଁ ମାଈ ବାଛୁରୀ ହୋଇଥିଲା, ବର୍ଷେ ହେଲା ଛୁଆ ଦେଲେଣି । ଏବେ ମୋ'ର ଚାରିଟି ଗାଈ । ଦୁଧ ବେପାରୀ ଆସି ଘରୁ ଦୁଧ ନେଇଯାଏ । ନିଜେ ଆଉ ପିଲାମାନେ ଟିକେ ଖାଣ୍ଟି ଦୁଧ ଖାଇବାକୁ ପାଉ । ଆଜିକାଲି ବଜାରରେ ଦୁଧର ଚାହିଦା ତ ତୁମେ ଜାଣିଥିବ । ''

ଲୋକଟି ଏ ସବୁ ଦେଖି ଆବାକାବା ହୋଇ ଯାଇ ମଉସାଙ୍କ କଥାରେ ମୁଣ୍ଡ ହଲାଇ ହଁ କଲା ।

ତା'ପରେ ପଚାରିଲା -ଆଚ୍ଛା ମଉସା, ଏ ସବୁ କଥା ତ ମତେ କିମିଆ ପରି ଲାଗୁଛି । ଆମ ପିଲାଦିନେ ମୁଁ ଯେତେବେଳେ ବାପାଙ୍କ ସାଙ୍ଗରେ ଆସିଥିଲି, ସେତେବେଳେ ତ ଏ ସବୁ କିଛି ନ ଥିଲା, ଏତେ କାମ କରିବା ପାଇଁ ତମେ ଟଙ୍କା ପଇସା ପାଇଲ କେଉଁଠୁ ?

କଥାବାର୍ତ୍ତା ହେଉ ହେଉ ସେମାନେ ଆସି ପୋଖରୀ କୂଳରେ ଥିବା ସିମେଣ୍ଟ ଚଉତରା ପାଖରେ ପହଁଚି ଯାଇଥିଲେ ।

ପୋଖରୀରେ କାଚକେନ୍ଦୁ ପରି ପାଣି । ପୋଖରୀ ହୁଡ଼ାର ଚାରିପାଖରେ ନଡ଼ିଆ ଗଛ । ଦକ୍ଷିଣ ପାଖର ଗଛ ଗୁଡ଼ାକ ଟିକେ ବଡ଼ ବଡ଼ । ସବୁ ଗଛରେ ପ୍ରାୟ ଫଳ ଧରିଛି ।

ମଉସା କାନ୍ଧରେ ପକାଇଥିବା ନାଲି ଗାମୁଛାରେ ପକ୍କା ଜାଗାଟା ଝାଡ଼ି ଦେଇ, ବସିବାକୁ କହି,ଆପେ ବସିଲେ ।

ତା'ପରେ କଥା ଆରମ୍ଭ କଲେ -

''ହଁ'ରେ ପୁଅ ଇଏବି ଗୋଟିଏ କିମିଆ, ହାତର କଉଶଳରେ ଯାଦୁକର କେତେ ଭେଳିକି ଦେଖାଇ ଦିଏ, ସେଥିରେ କିଛି ଯନ୍ତ୍ର ମନ୍ତ୍ର ନ ଥାଏ । ମୋ'ର ଏ ବଗିଚାଟି ସେମିତି ଗୋଟିଏ କିମିଆ । ଏଥିରେ ମନ୍ତ୍ର ନାହିଁ କି' ଯନ୍ତ୍ର ନାହିଁ । ସବୁ ଖାଲି ହାତର କଉଶଳ । ହାତର କାମ ।

ଶୁଣ ତେବେ ମୋ' କଥା , -

ଆଗେ ତ ଆମର ଅବସ୍ଥା ବିଶେଷ ଭଲ ନ ଥିଲା । ସହର ତଳି ଗାଁ । ସହର ଲୋକଙ୍କର ସୁବିଧା ସବୁ ଆମେ ନପାଇଲେ ବି, ସହରର ଲୋକଙ୍କୁ ଦେଖି ଆମେ କିଛି ସହରୀ ହେବାକୁ ଚେଷ୍ଟା କରୁ । ସେଠାରେ ଏତେ ସ୍କୁଲ କଲେଜ, ଆଉ ଆମ ଗାଁର ପିଲାଗୁଡ଼ା ଆଜିକାଲି ଅଧା ପାଠୁଆ କେଇଟା ବି ଗଣ୍ଡମୂର୍ଖ ହୁଙ୍କାଦଣ୍ଡା । ହଂସ ସାଙ୍ଗରେ ବଗ ପହଁରିବାକୁ ଚେଷ୍ଟା କଲାପରି ଆମ ଗାଁର ପିଲାଗୁଡ଼ାକ ସହରୀ ହେବାକୁ ଚେଷ୍ଟାକରି କଇଁଥା ହୋଇଯାଉଛନ୍ତି ।

ସେତେବେଳେ ବି ଅବସ୍ଥା ପ୍ରାୟ ସେଇଆ ଥିଲା,ଆଗରୁ କହିଛି ତ ଆମର ଚଳିବା ଆଦୌ ଭଲ ନ ଥିଲା । ତମ ବାପା ସେତେବେଳେ ଆମ ଘରକୁ ରୀତିମତ ଯିବାଆସିବା କରୁଥିଲେ । ତମେ ଅଳପ ବୟସର ହୋଇଥିଲ, ତମେ ବି ବାପାଙ୍କ ସାଙ୍ଗରେ କେତେ ଥର ଆସିଥିବ । ତମ ବାପା ବିଶିଆ ଭାଇ, କେତେ କ'ଣ ଆମକୁ ନ ଦେଇଛନ୍ତି,ଧାନ ଚାଉଳ ଠଉଁ ଆରମ୍ଭ କରି ବିରି ମାଣ୍ଡିଆ କେତେ କ'ଣ ! ତମ ବୋଉ ଚାଲିଗଲା ପରେ ଆମର ଯିବା ଆସିବା ବନ୍ଦ ହୋଇଗଲା । ତା'ପରେତମ ମାଉସୀଙ୍କର ବି କାଳ ହୋଇଗଲା । ବର୍ଷେ ଦି'ବର୍ଷ ପରେ ପୁଅକୁ ହାତକୁ ଦି'ହାତ କରିଦେଲି ।''

ମଝିରେ ମଝିରେ ଲୋକଟି ଚୁପ୍ ଚାପ୍ ଖାଲି ମୁଣ୍ଡ ହଲାଉ ଥାଏ । ମଉସା ବୁଢ଼ା କହି ଚାଲିଥା'ନ୍ତି --

'ଗୋଟିଏ ଆସିଲେ ମୁଠିଏ ଅଧିକା ଦରକାର' । ଆମେତ ଯାହା ଭଲ ମନ୍ଦରେ ଶାଗପେଜ ଖାଇ ଚଳାଇନେଉଥିଲୁ, ନୂଆ ବୋହୂଟି ଆସିଲା । ଅଭାବ ସଂସାର, କ'ଣ କରିବି ? ହଠାତ୍ ମୁଣ୍ଡକୁ ବୁଦ୍ଧି ଦିଶିଲା, ଦିନେ ତମ ଘରକୁ ଚାଲିଗଲି । ପୁଅ ବାହାଘରକୁ ତମ ଘରେ ଖବର ଦେଇ ନ ଥିଲି ବୋଲି, ମନ ଖାଲି ମାଡ଼ି ମାଡ଼ି ପଡୁଥାଏ, ତଥାପି ବିଶିଆ ଭାଇଙ୍କୁ ମୋ ମନ କଥା କହିଲି । ତମ ବାପା କି ଦେବତାଭଳି ଲୋକ ! ମୋ' କଥା ଶୁଣି ସେ ମତେ ଦୁଇଶ ଟଙ୍କା ଉଧାର ଦେଲେ । ସେତେବେଳେ ଶସ୍ତାଯୁଗ । ଧାନ ଚାଉଳ କେତେ ଶସ୍ତା । ଟଙ୍କାଏ ଦେଲେ କଟିକୀ ଚାରିସେରେ(ଏବ ମାପରେ ପ୍ରାୟ ୫କିଲୋ) ଚାଉଳ । ଖାଲି ଲୋକଙ୍କ ପାଖରେ ଅଭାବ ଥାଏ ଟଙ୍କା ପଇସା ।

ସେତେବେଳେ ଏଇ ଘର ଚାରିପାଖରେ ଖାଲି ଅନାବାଦି ପଡ଼ିଆ ପଡ଼ିଥାଏ । ବୁଦାବୁଦା କଣ୍ଟାଗଛ, ଖାଲଢ଼ିପ ହୋଇ ଜଙ୍ଗଲିଆ ଭଳିଦିଶୁ ଥାଏ ।

ବୃନ୍ଦାବନ, ହେଇ ଦେଖ, ସେ ପାଖକୁ ଯେଉଁ ଘରଗୁଡ଼ାକ ଦେଖୁଛ, ସେ ସବୁ କିଛି ନ ଥାଏ । ଦୁଇଜଣ ଲୋକ ଆଉ ବାପ ପୁଅ ଲାଗିକରି କଣ୍ଟାବୁଦା ହାଣି,କିଆବଣ କାଟି, ଆମ ନିଜ ଜାଗାଟା ଆଗେ ସଫା କଲୁ । ସେଥିରୁ ଛୋଟ ଅଂଶଟିଏ କାଟି ସମତଳ କରି କ୍ଷେତଟିଏ କଲୁ ।

ସେ ତ ଅନେକ ଦିନ ତଳର କଥାରେ ବାପ, ସେତେବେଳକୁ ନୂଆ ହୋଇ ବ୍ଲକ ଉନ୍ନୟନ ଅଫିସ ସବୁ ତିଆରି ହୋଇଥାଏ । କୃଷି ବିଭାଗରୁ ମଞ୍ଜି ଆସି ଏଠାରେ ବିକ୍ରି ହେଉଥାଏ । ଦିନେ ଓପରଓଳି ହାଟରୁ ଫେରିବା ବାଟରେ, ଦେଖିଲି ସଭା ହେଉଛି । ଚାଲୁ ଚାଲୁ ଟିକେ ଅଟକିଗଲି । ଅଂଗ୍ରେଜ ଅମଳର ସଭାପରି ତ ଲାଗୁ ନଥାଏ ଗାନ୍ଧୀ ମାହାତ୍ମ୍ୟ ତ ଫିରିଙ୍ଗି ସରକାରକୁ ତଡ଼ି ଦେଲେ । ତା ପରେ ତ ଆଉ ସେମିତି କିଛି ନଥିଲା । ଗାନ୍ଧିଜୀ ଗଲାପରେ ଆଉ ଏ କି ସଭା ?

ଯାହାହେଉ ସେ ସଭାରେ ଠିଆ ହୋଇ ମୁଁ କେତେ କଥା ଶୁଣିଲି । ସେଇଠୁ ଘରକୁ ନଆସି ସିଧାଗଲି ବ୍ଲକ ଅଫିସ୍ ଆଡ଼େ । ରିହାତି ଦରରେ ପନିପରିବା ମଞ୍ଜି ସବୁ ବିକିରି ହେଉଥାଏ । ଦି’ତିନି ପ୍ରକାର ପରିବା ମଞ୍ଜି ଆଉ ଶାଗ ମଞ୍ଜି ଆଣି ଘରକୁ ଆସିଲି ।

ଜଣେ ବାବୁ, ଲୋକମାନଙ୍କୁ ସାର ପୁଡ଼ିଆ ଦେଇ କହିଲେ - --

‘‘ଏଇଟା ନେଇ ପରୀକ୍ଷା କରି ଦେଖ, ଫସଲରେ ଦେଲେ, ବେଶି ଫସଲ ଆଉ ଭଲ ଫଳ ବି ମିଳିବ । ଗଛ ବି ଭଲ ହେବ । ’’

ସଞ୍ଜ ବେଳକୁ ଘରେ ଆସି ପହଞ୍ଚିଲି, ମଞ୍ଜି ଦେଖି ପୁଅ ଭାରି ଖୁସି ହୋଇଗଲା, ସାର ଦେଖି ମୁହଁ ମୋଡ଼ି ନାହିଁକଲା ।

ଲୋକଟି କହିଲା - ମଉସା, ବାବନା ଭାଇ ନାହିଁ କଲା କାହିଁକି ?

କ’ଣ କହିବିରେ ପୁଅ, ସେତେବେଳେକୁ ସିଏ ମୂର୍ଖକୁ ମୁଁ ମୂର୍ଖ । ଅନ୍ଧ ବିଶ୍ୱାସରେ ଆମେ ବୁଡ଼ିଯାଇ ଥାଉ ।

ବାବନା କହିଲା- ‘‘ବାପା, ଉନ୍ନତ ମଞ୍ଜି ସିନା ଲଗାଇବା ଭଲ, ହେଲେ ଏ ସାରକୁ ମାଟି ମା’ ମୁହଁରେ ଦବା ? ଧରିତ୍ରୀ ମା’ ସହିବଟି ! ହତଶିରି ହୋଇଯିବା । ଲକ୍ଷ୍ମୀ ଛାଡ଼ିଯିବେ ।’’

ଆମର ବା,କୋଉ ଶିରିଥିଲା, ଦୁଇ ଓଳି ପେଟପୁରା ଖାଇବାକୁ ମିଳୁ ନ ଥିଲା । କ’ଣ କହିବିରେ ପୁଅ,ବାପ ପୁଅ ଦୁହେଁ ଆଖି ଥାଇ ଅନ୍ଧ । ସେ ସାରକୁ ଗଛରେ ନଦେଇ ଅଳିଆ ଗଦାକୁ ଫୋପାଡ଼ି ଦେଲୁ ।

ଆରେ ବାପ, ମୋତେ ସତ,ତମକୁ ମିଛ, ସେ ଅଳିଆ ଗଦାରେ ପଡ଼ିଥିଲା କେତେଟା କୁଜି କୁଜି ସାରୁପୁଆ, ବାପା ସେ କ’ଣ ହେଲା ଭଳିଆ ହେଲା, କି ବୃଶାଳିଆ ଗଛ ।

ଆରେ ହଁ ବାପା,-କ’ଣ କହୁ କହୁ କୁଆଡ଼େ ଆସି କହିଲିଣି । ସେତେବେଳେ ନୂଆ ବନ୍ଦର କାମ ହେଉଥାଏ, ଆଉ ଆସିଲା ବେଳେ ସେପାଖରେ ଯଉଁ ସିଧା ଚଉଡ଼ା ପକ୍କା ରାସ୍ତାଟିଏ ଦେଖି ଆସିଲ, ସିଏ ବି ତିଆରି ହଉଥାଏ । କେତେ ଲୋକ କାମ କରୁଥାନ୍ତି । ସବୁ ଜିନିଷର ଚାହିଦା ବଢ଼ି ବଢ଼ି ଚାଲି ଥାଏ ।

ପୁଅ କହିଲା,‘‘ ବାପା, ମୁଁ ମାଟି କାମ କରିବାକୁ ଯିବି । ’’

ମୁଁ କହିଲି - ‘ନାଇଁ ନିଜ କ୍ଷେତରେ ଖଟିବା, ପନିପରିବା କରିବା ।’

ନିଜ ବିଲରେ ନିଜେ ଖଟିଲେ, ନିଜେ ମାଲିକ, ପର ଘରେ କାମ କଲେ କୁଲି ମଜୁରିଆ । ପୁଣି ନିଜେ ନିଜ ବିଲବାଡ଼ିରେ ଖଟିଲେ ଫସଲକୁ ନିଜ ପିଲା ପରି ବଢ଼େଇ ପାରିବା । ବେଳ ଅବେଳରେ ନିଜ ଘରେ ଥିଲେ ସବୁକିଛି କରି ପାରିବା, ପର ଘର କାମରେ ସେ ସ୍ୱାଧୀନତା କାହିଁ ?

ପୁଅ ମନକୁ କଥାଟା ପାଇଲା । ତା’ପରେ ବାପ-ପୁଅ ଲାଗିପଡ଼ି ଛୋଟ ଜାଗାଟିରେ,ରୀତିମତ ପନିପରିବା ଫଳାଇଲୁ । ପାଣିଦେବା, ଘାସବଛା, ମାଟି କୋଡ଼ା-ଖୁସା, ଯେତେବେଳେ ଯାହା ଦରକାର, ସବୁ ମନଦେଇ କଲୁ । କୋଉ କାଳର ପଡ଼ିଆମାଟି ଥିଲା, ଆଚ୍ଛାମତେ ବେଉଷଣ ହେବାରୁ ଭଲ ଫସଲ ଧଇଲା ।

ଥରେ ଜଣେ ପରିବା ବେପାରୀକୁ ଖବର ଦେବାରୁ ସେ ରୋଜିନା ଆସି ପଇସା ଦେଇ ପରିବାପତ୍ର ଓଜନକରି ନେଇଯାଏ । ହଁ, ଏବେତ ବଗିଚାଟି

ବହୁତ ବଢ଼ି ଗଲାଣି, ସେ ପୁରୁଣା ବେପାରୀ ସାଙ୍ଗରେ ଆହୁରି ଅନେକ ବେପାରୀ ଆସି ପରିବାପତ୍ର ରୀତିମତ କିଣି ନେଉଛନ୍ତି । ମଝିରେ ମଝିରେ ବାହାର ବଜାର ଦରଦାମ୍ ସାଙ୍ଗରେ ମୁଁ ଖୋଜ ଖବର ନେଉଥାଏ ।

ବରଷେ କି ଦେଢ଼ ବର୍ଷ ଭିତରେ କିଛି କିଛି ପଇସା ରଖି ତମ ବାପାଙ୍କ ର ଟଙ୍କା ସୁଝିଦେଲି, ଟଙ୍କା ସିନା ସୁଝି ଦେଲି, ହେଲେ ମୋ'ର ଅଭାବ ବେଳେ ତମ ବାପାଙ୍କର ସେ ସାହାଯ୍ୟ କଥା ମୁଁ ଭୁଲି ପାରିବି ନାହିଁ ।

ହଁ, ତା ପରେ କ'ଣ ହେଲା ଶୁଣ, ...

ପାଞ୍ଚ ବରଷ ଭିତରେ ,ଏଇ ସେ କୂଅ ପର୍ଯ୍ୟନ୍ତ ଯେତେ ଜାଗା ଥିଲା, ସବୁ ଆବାଦ, କରି ନେଲୁ । ଧୀରେ ଧୀରେ ପରିବାପତ୍ର ବେଶି ହେଉଥାଏ,ଆମର ନିଜର ସେଇ ପର୍ଯ୍ୟନ୍ତ ଜାଗା ଥିଲା । ସେଇ ପୋଖରୀଟା ଆଉ ଜଣେ ଲୋକର । ଗୋଟିଏ ଦଳ ଗଡ଼ିଆ ଥାଏ । ପୋଖରୀ ଚାରି ପାଖରେ କଣ୍ଟାବଣ । ଆଉ ସେ ଆରପାଖଟା ଆଉ ଜଣେ ଲୋକର ଖାଲି ପଡ଼ିଆଟାଏ ଥାଏ , ବରଷା ଚାରିମାସ ସନ୍ତ ସନ୍ତିଆ ହୋଇ ଅନାବନା ଦଳରେ ବୋଝେଇ ହୋଉଥାଏ । ଏଇ ସେ କଣରେ ଯେଉଁଠି କାଜୁ ବାଦାମ ଲାଗିଛି, ସେ ଥାଏ ଆଉ ଜଣେ ଲୋକର ।

''ମଉସା,କାଜୁବାଦାମ ଗଛ ସାଙ୍ଗରେ ଜମିଟାତ ବହୁତ ଟଙ୍କା ପଡ଼ିଥିବ ?''--ବୃନ୍ଦାବନ ପଚାରିଲା ।

ନାଇରେ ବାପା, ସେଇଟା ଏମିତି ନଥିଲା । ବହୁତ ଦିନ ତଳେ ବର୍ଷେ ନଈ ବନ୍ଧ ଭାଙ୍ଗିଯାଇ ପାଣି ଆସିଲା, ନଈକୂଳରୁ ସେ ଜମି ପର୍ଯ୍ୟନ୍ତ ବାଲିଚର ହୋଇଗଲା, ଚାଷ ଜମିରୁ ଲୋକମାନେ ବାଲି କାଢ଼ିଦେଲେ, ଆଉ ଏ ପଡ଼ିଆ ଜମିବାଲା ବାଲି ନ କାଢ଼ି ସେମିତି ଛାଡ଼ି ଦେଇଥାଏ । ସେ ପୂରୁବ ପାଖର କେତେ ଜମିବାଲା ଓଲଟି ସେମାନଙ୍କ ବାଲି ଏଇ ପଡ଼ିଆରେ ଗଦା କରି ପକେଇଲେ । ଏମିତି ପାଖ ଜମିଗୁଡ଼ିକ ପତିତ ଅବସ୍ଥାରେ ପଡ଼ିଥାଏ ।

ଦିନେ ପୁଅ ସାଙ୍ଗରେ ପରାମର୍ଶ କଲି ଏଇ ପାଖ ଜାଗା ଗୁଡ଼ିକ କିଣିବା ପାଇଁ । ଶସ୍ତାରେ ବି ମିଳିଯିବ । ଏତେ ଟଙ୍କାତ ପାଖରେ ନ ଥାଏ, ପରିବା ପତ୍ର ବିକ୍ରିରୁ ଘର ଖର୍ଚ୍ଚ ହୋଇସାରିଲା ପରେ ଯାହା ଅଳପ କିଛି ବଳେ ସେଇପଇସାକୁ ସମ୍ବଳ କରିଥାଏ । କ'ଣ କରିବି,କ'ଣ କରିବି ଏମିତି ଭାବୁ ଭାବୁ, ହଠାତ୍ ମୁଣ୍ଡରେ

ଗୋଟାଏ କଥା ଡୁକିଲା, ଦୂର ଗାଁ ନଈ ଆରପାରିରେ ଥିବା ଗୋଟିଏ ଚାଷ ଜମିକୁ ବିକ୍ରି କରି ଏଇ ଜମିଗୁଡ଼ାକ କିଣିବି । ପୁଅ ଅମଙ୍ଗ ହଉଥାଏ ।

ପୁଅ କହିଲା-'ଭାଗରେ ତ ଧାନ ମିଳୁଛି । ଜମି ବିକିଲେ ଧାନ କୋଉଁଠି ଚାଷ କରିବା ? '

ସେଉଠୁ ବୋହୂ କହିଲା--

''ଏତିକି ବୋଲି ତ ଜମି । ସେ ଜମିରୁ ଯାହା ମିଳୁଛି ସିଏ କୋଉ କାମକୁ ପାଉଛି । ଭାଗୁଆମାନେ 'ଦେ ଦେଉଣୀକୁ କୋଳଥ ମଣ୍ଡା' ପରି ଧାନ ଅଗାଡ଼ି ଯାହା ପାଇଲେ ଦେଇଗଲେ । ଭାଗ ଜମିରେ ସାତ ପଛରେ ଫସଲ ଲଗାନ୍ତି । ସେଥିରେ ଯାହାଫଳେ ତା'ମା ଗଙ୍ଗେ ଜାଣନ୍ତି । କେବେ ଧୋଇକୁ କେବେ ମରୁଡ଼ି । ସେ ଜମି ଥାଇ କି' ଲାଭ । ବାପା, ତାକୁ ବିକିଦେଲେ ଭଲ ।''

ବୋହୂ ଏତକ କହିବାରୁ ପୁଅ କହିଲା-

''ବାପ ଅଜାଙ୍କ ସାତ ପୁରୁଷ ଚାଷ ଜମି ବିକିବା କ'ଣ ଠିକ୍ ?''

ବୋହୂ କହିଲା-''ଆଉ ପିତୃପୁରୁଷ ଜମିକୁ ବିକିଭାଙ୍ଗି ଆମେତ ଖାଇ ଦେଉନୁ । ଜମି ବିକିବା, ଜମି କିଣିବା ଏଥିରେ ପିତୃପୁରୁଷ ଅଶାନ୍ତି କାହିଁକି



ହେବେ ? ପାଖ ବାଲି, ଦୂର ମଟାଳ । ଘରପାଖ ଜମିହେଲେ, ନିଜ ପିଲା ପରି ଯତ୍ନ ନେଇ ପାରିବା । ଖତ,ଗୋବର ପକାଇବା,ଫସଲର ଭଲ ମନ୍ଦ ନିଜେ ଦେଖିବା । ବେଳ ଦେଖି ଠିକ୍ ସମୟରେ ଫସଲ ଲଗାଇବା ।’’

ତା’ ପରେ ଯାଇ ପୁଅ ହଁ କଲା ।

ଜମି କିଣିବା କଥା ଉଠିବାରୁ, ବୋହୂ ମୋତେ ଟଙ୍କା, ଚାରିଣି, ଆଠଣି କରି ପାଞ୍ଚ ଶହ ତେଇଶ ଟଙ୍କାର ଗୋଟିଏ ଝୁଲା ଆଣି ଦେଲା ।

ଆରେ ବାପ, ମୁଁ ତ ଆବାକାବା- ମୁଁ ପଚାରିଲି-

‘‘ବୋହୂ, ଏତେ ଟଙ୍କା ଆସିଲା କୋଉଁଠୁ ?’’

ବୋହୂ କହିଲା - ‘‘ବାପା, ପ୍ରତିଦିନ ପରିବା ବେପାରୀ ଯେଉଁ ଟଙ୍କା ଦେଇଥାଏ, ସେ ଟଙ୍କାରୁ ଆଠଣା ଚାରଣା କି ଟଙ୍କାଏ ଦି ଟଙ୍କା ଯେଉଁ ଦିନ ସୁବିଧା ହୁଏ ମୁଁ ମାଟି ଘଡ଼ାରେ ପକାଇ ଦିଏ । ଆଉ ଖର୍ଚ୍ଚପାଇଁ ତମେ ଯେଉଁ ଟଙ୍କା ଦିଅ ସେଥିରୁ ବି କିଛି କିଛି ସଞ୍ଚିକରି ରଖେ । ଜମିବିକ୍ରିରୁ ଯାହା ମିଳିବ ସେ’ତ କୁଳାଇବନି । ତେଣୁ ଜମି କିଣିବାକୁ ଟଙ୍କା ଦରକାର ଶୁଣି, ସେ ଘଡ଼ି ସବୁ ଏବେ ଖୋଲିଛି ।’’

‘ହିଁ,...ହିଁ... ହିଁ... ନୂଆବୋଉ ତା’ହେଲେ ଜଣେ ପକ୍କା ଘରଣୀ ।’ ଲୋକଟି ତାଛଲ୍ୟ କଲାଭଳି କହିଲା ।

ମଉସା କଥାଟାକୁ ଏତେ ଗୁରୁତ୍ୱ ନ ଦେଇ ବୁଲାଇ କହିଲେ--‘‘ହଁରେ ବାପ, କଥାରେ କହନ୍ତି --‘ଘରକୁ ଘରଣୀ ବିଲକୁ ହରିଣୀ ’। ବୋହୂ ଏବେ ବି ଖର୍ଚ୍ଚରୁ କାଟ କରି ପଇସା ପତ୍ର ସଞ୍ଚୟ କରି ରଖେ । ହେଲେ ସେ ଆଉ ମାଟି ଘଡ଼ିରେ ରଖୁନି, ମାସ ଶେଷ ବେଳକୁ ଟଙ୍କା ଜମାହୋଇଗଲେ, ନେଇ ଡାକଘର ସଞ୍ଚୟ ଜମାରେ ତା’ ନିଜ ନାଁରେ,ଆଉ ପୁଅ ଝିଅଙ୍କ ନାଁରେ ରଖି ଆସେ । ଟଙ୍କାଜମାକୁ ଜମାହେଉଛି ଆଉ ସୁଧ ବି ମିଳୁଛି । ଯୋଉଁ ଦିନ ଦରକାର ହେଉଛି, ଟଙ୍କା ଉଠାଯାଇ ପାରୁଛି ।’

ବୃନ୍ଦାବନର ଫାଙ୍କା ମୁଣ୍ଡରେ ଏ ‘ଜଡ଼ାକୁ ଭାଗବତ’ ପରି ଏପାଖେ ପଶି ସେପାଖେ ବାହାରି ଗଲେ ବି ମଉସା ତାକୁ କହି କହି ଚାଲିଥା’ନ୍ତି । ଆଉ ସିଏ ଖାଲି ମୁଣ୍ଡ ଟୁଙ୍ଗାରୁ ଥାଏ ।



''ହେଲେ ପୁଅ,ବୋହୂର ସେ ପଇସାପତ୍ର ଉପରେ ମୁଁ କେବେ କିଛି ପଚାରେ ନାହିଁ ।''

ବୋହୂଯାହା କହିଲା '-କଥାରେ କହନ୍ତି ପାଖ ବାଲି,ଦୂର ମଟାଳ ।' ନଈ ସେପାରିରେ ଥିବା ଦୂର ଚାଷ ଜମିକୁ ଭାଗ ଚାଷକୁ ଦେଇ ଦେଇଥିଲି । ଅଧ ଏକର ତିନି ପା ଯାଏ ମୋଟ ଚାଷ ଜମି । ଦୋ-ଫସଲି ହେଲେ ବି ଭାଗ ଚାଷରୁ ବେଶି ଫସଲ ମିଳେନା, ଚାଷୀ କିଛିନା କିଛି ବାହାନା ଦେଖାଇ ଫସଲରୁ ବେଶି ଭାଗ ମାରି ଖାଏ ।

ବୋହୂ ସାହସ ଦେଲା । ବୋହୂର ଟଙ୍କା, ମୋ ପାଖରେ ଥିବା ଟଙ୍କା, ଆଉ ଚାଷ ଜମି ବିକା ଟଙ୍କା ମିଶାଇ ଏକ ବିରାଟ ଜାଗା କିଣି ପକାଇଲି ।''

ଲୋକଟି ନଡ଼ିଆ ଗଛଛାଇରେ ହାଁ କରି ବସିଥାଏ, ଆଉ ମଉସାଙ୍କ ଜୀବନ କାହାଣୀ ଶୁଣୁଥାଏ ।

ତା'ପରେ ମଉସା କହିଲେ - ''ମୁଁ ଦିନେ ଶୁଣିବାକୁ ପାଇଲି ଯେ - ପାଖ ଗାଁରେ ରାତି ଇସ୍କୁଲ ଖୋଲିଛି । ଅପାଠୁଆ ଲୋକଙ୍କୁ ପାଠ ଶିଖାଇ ଦିଆଯାଉଛି । ବାଟ ବି ବେଶି ଦୂର ନୁହେଁ । ସଞ୍ଜବେଳକୁ ତ ଆମର କାମ ଦାମ ସବୁ ଶେଷ

ହୋଇ ଯାଇଥାଏ । ମୁଁ ସେଇଠୁ ପୁଅକୁ କହିଲି -‘‘ପୁଅରେ ସେଇ ରାତି ଇସ୍କୁଲରେ ପଢ଼ିବାକୁ ଯାଆ’’ ।

ପୁଅ କହିଲା -‘‘ନାଇଁ ବାପା, ସେକଥା ହବନି ।

‘ନିଶଉଠା ପାଠ,ଆଉ ଛତୁଉଠା କାଠ’, କ’ଣ କାମକୁ ପାଇବ ?’’

ମୁଁ କହିଲି - ‘ନାଇଁରେ ପୁଅ, ମୂର୍ଖ ଦୋଷ ତ ହେଲେ କଟିଯିବ । ସଞ୍ଜରେ ଭାଗବତ ଅଧ୍ୟାୟ ପଢ଼ି ପାରିବୁ ତ ! ହିସାବ କିତାବ ଧାଡ଼ିଏ ଲେଖି ପାରିବୁ ତ । ତା’ପରେ ସଞ୍ଜବେଳେ ଆମର ଆଉ କି’ କାମ ? ଯେତେବେଳେ ପାଠପଢ଼ା ପାଇଁ ଏତେ ସୁବିଧା ମିଳୁଛି, ପାଠ ନ ପଢ଼ିବାମାନେ- ‘ଅନ୍ଧ ସୁନା ଗରା ଝୁଣ୍ଟି ଛାଡ଼ିବା କଥା ।’ ପାଠ ପଢ଼ା ତ ମାଗଣା,ପୁଣି ସିଲଟ,ଖଡ଼ି,ବହି, ଖାତା,ଆଉ ଆଲୁଅ ତ ସେମିତି ମାଗଣାରେ ମିଳୁଛି ।’’

ତଥାପି ପୁଅ କୁନ୍ଥ କୁନ୍ଥ ହେଉଥିଲା । ବୋହୂ ଆଗରୁ ଦି’ ଅକ୍ଷର ପାଠ ପଢ଼ି ଥିଲା,ପାଠର ମହତ୍ତ୍ୱ ସେ ବୁଝିଛି । ପୁଅର ଆଉ ମୋ’ର ଏମିତି କଥା କଟାକଟି ହେଲାପରେ, ବୋହୂ ପ୍ରସ୍ତାବ ଦେଲା-

‘‘ବାପା ,ସଞ୍ଜବେଳେ ଗାଈକୁ ଖୁଆଇ ପିଆଇ ଗୁହାଳରେ ବାନ୍ଧିଦେଇ, ବାପପୁଅ ଦି’ଜଣଯାକ ଇସ୍କୁଲକୁ ଗଲେ କେମିତି ହୁଅନ୍ତ । ? ’’



ମୋର ଆଉ କି'ବାଟ ଥିଲା ? ସତ କହିଲେ ପୁଅ ମୁଁ ନାଚାର ହୋଇଗଲି । ବୋହୂର ସ୍ନେହ ମମତା ଆମ ବାପ-ପୁଅକୁ ସବୁ କାମରେ ଚୁପ୍ କରାଇ ଦଉଥାଏ । ମୁଁ ହଁ କହିବା ପରେ, ବହୁ କଷ୍ଟରେ ଆଉ ବୋହୂ ବି ଟାଣ ଦେବାରୁ ପୁଅ ରାଜି ହେଲା ।

'ହେଁ...ହେଁ...ହେଁ ... 'ଲୋକଟି ହଠାତ୍ ହୁଣ୍ଡାଳିଆ ହସ ହସି କହିଲା- 'ମଉସା ବୁଢ଼ାବେଳେ ପାଠ ପଢ଼ି କ'ଣ ହାକିମ-ବାରିଷ୍ଟର ହେଲ ? ଏ ବୁଢ଼ାକାଳ ପାଠ କ'ଣ କାମରେ ଲାଗିଲା ?'

ମଉସା ମୁଣ୍ଡ ହଲାଇ ମୁରୁକି ମୁରୁକି ହସି କହିଲେ - ''ହଁରେ ପୁଅ, ହଁ... ଆଜି ଏଇଯେଉଁ ବିରାଟ ବଗିଚାଟି ଦେଖୁଛ, ସେ ସବୁ ସେଇ ଦି' ଅକ୍ଷର ପାଠର ଗୁଣ । ମାଗଣାରେ ମିଳିଥିବା ଯେଉଁ ସାର ପିଡ଼ିଆକୁ ବାପପୁଅ ଅଳିଆ ଗଦାରେ ଫୋପାଡ଼ି ଦେଇଥିଲୁ, ସେଇ ସାରକୁ ଆଜି ପଇସା ଦେଇ କିଣି ଖତ ସାଙ୍ଗରେ ମିଶାଇ ଅଧିକ ଫସଲ ପାଇପାରୁଛୁ ।

କୃଷି ବିଭାଗ ଲୋକଙ୍କ ସାଙ୍ଗରେ ପରାମର୍ଶ କରିପାରୁଛୁ । 'ସେଇ ଦି' ଅକ୍ଷର ପାଠ ଯୋଗୁ ମୁଁ ତିନି ତିନି ବରଷଧରି ଜିଲ୍ଲା କୃଷି-ପ୍ରଦର୍ଶନୀରେ ପ୍ରଥମ ପୁରସ୍କାର ପାଇ ଆସୁଛି ।'

ଲୋକଟି କହିଲା - ' ମଉସା, ମୁଁ ଭାବିଥିଲି, ପାଠ ପଢ଼ିଲେ ଖାଲି ଚାକିରୀ କରନ୍ତି ,- ଆଉ ଯାହାର ଜମିବାଡ଼ି ଅଛି, ଟଙ୍କା ପଇସା ଅଛି, ତା'ର ପାଠ ପଢ଼ା କ'ଣ ଦରକାର ? '

ମଉସା ପୁଣି କହିବା ଆରମ୍ଭ କଲେ -

''ଭଲ କଥାଟି କହିଲୁରେ ପୁଅ,- ଭଲ କଥାଟି କହିଲୁ । ଆଚ୍ଛା, ତମର ତ' ଜମିବାଡ଼ି ଥିଲା, ଟଙ୍କା ପଇସାର ବି ବିଶେଷ ଅଭାବ ନ ଥିଲା,କୁଟୁମ୍ବ-ବାଟୁମ୍ବ ତ ବେଶି ନଥିଲେ,ହେଲେ ତମର ଆଜି ଏ ଅବସ୍ଥା କାହିଁକି ? ଆଉ ଆମର ଡିହ-ବାଡ଼ି ଗୋବରେ ଗୋବେ ନ ଥିଲା,ଥିଲା କେବଳ କଣ୍ଟା-ଝଟା ବଣୁଆ ପଡ଼ିଆ ଖଣ୍ଡେ । ଅଧ ଏକର ତିନିପା' ଧୋଇଆ ଚାଷ ଜମି । ସବୁଦିନେ

ପେଟପୁରା ଗଣ୍ଡେ ଖାଇବାକୁ ବି ମିଳୁ ନଥିଲା, ଆଉ ଆଜି ଆମର ଅବସ୍ଥା ତ କିଛି ଖରାପ ନୁହେଁ ।

ହଁ ଆଉ ଗୋଟିଏ କଥା ହେଲା-- ''ଆମ ଗାଁ ରାତି ସ୍କୁଲକୁ କେବଳ ଅପାଠୁଆ ଟୋକାମାନେ ଯାଉଥିଲେ । ନିଜର କିଛି ଇଚ୍ଛା ଥିଲେ ବି ଅଧାବୟସ କି ବୁଢ଼ାମାନେ ପଢ଼ିବାକୁ ଯାଉ ନଥିଲେ । ଲାଜ ଲାଗୁଥିଲା । ମୁଁ ପଢ଼ିବାକୁ ଯିବା ଦେଖି ଆମ ସାଙ୍ଗରେ ଆଉ ଦଳେ ବି ଗଲେ । ହଁ, ତମେ ଗାଁ ମୁଣ୍ଡରେ ଯାଇଦେଖ ତ ଭାଗ'ତ ଟୁଙ୍ଗିରେ ଭାଗବତ ପଢ଼ା ହେଉଛି, ସବୁଦିନେ କିଛି ପୁରାଣ ବି ପଢ଼ା ଯାଉଛି । ଇନ୍ଦୁ ପୁନେଇରେ ଭାଗବତ ଜନ୍ମ , ହପ୍ତା ବି ବସୁଛି ।''



ଏବେ ଆମ ଘର କଥାଶୁଣ । ଅସଲ କଥାହେଲା -'ଟଙ୍କା ରୋଜଗାର ବଡ଼ କଥା ନୁହେଁ, ସେ ରୋଜଗାର-ଟଙ୍କାକୁ ଖର୍ଚ୍ଚ କରିବାର ଉପାୟ ଜାଣିବା ବଡ଼ କଥା ।'

''ମଉସା, ବଡ଼ପୁରୁଷ ଯାହା କହିଯାଇଛି ତା'ର କ'ଣ କିଛି ମୂଲ୍ୟନାହିଁ ? ନିଶଉଠା ପାଠ, ଛତୁଉଠା କାଠ କୋଉକାମରେ ଲାଗିବ ?''ଭାବିଭାବି ବୃନ୍ଦାବନ କହିଲା ।

--ଛତୁ ଉଠା କାଠ କେବେ ହୁଏତ ଅକାମି ହୋଇପାରେ , ନିଶଉଠା ପାଠ କିନ୍ତୁ ଅକାମି ନୁହେଁ , ନିଶଉଠା ପାଠ କେମିତି କାମରେ ଲାଗିପାରେ ଆମର ଏ ବଗିଚାଟି ସେ କଥା କହିବ ।''

ମଉସା ଟିକେ ଦମ ନେଇ ପୁଣି କହିଲେ--

--''ହଁରେ ପୁଅ, ମୁଁ ମୂର୍ଖ ଥିବାରୁ ମୋ' ପୁଅ ଅପାଠୁଆ ହୋଇଥିଲା, ମାତ୍ର ମୋ ନାତିନାତୁଣୀ ଆଉ ମୂର୍ଖ ନୁହନ୍ତି । ବାବନା ମୋର ଗୋଟିଏ ବୋଲି ପୁଅ । ତାକୁ ଦି' ଅକ୍ଷର ପାଠ ନ ପଢ଼ାଇ ମାଟି ସାଙ୍ଗରେ ମାଟିହେଇ କାମ କରାଇଲି । ବେଳେବେଳେ ପରଘରେ ମୂଲ ମଜୁରି ଲାଗି ତା'ର ଯୁଆନବେଳ ବିତିଥିଲା । କୋଶେ ପାଞ୍ଚପା' ବାଟଗଲେ ସହରରେ ଇସ୍କୁଲ । ତେବେ ବି ମୋ ପିଲାକୁ ପାଠ ପଢ଼ାଇ ପାରିଲିନି । ମୋ'ର ଗୋଟାଏ ଧାରଣା ଥିଲା ବଡ଼ଲୋକ ପିଲାଏ ହିଁ ଖାଲି ପାଠପଢ଼ନ୍ତି । ଗରିବର ଭାଗ୍ୟ ପଥରତଳେ ।

କଥା କହୁ କହୁ ମଉସାଙ୍କ ଆଖିରେ ଲୁହ ଢକେଇ ଆସିଲା । ତା'ପରେ ପୁଣି କଥା ଲମ୍ବାଇ ଚାଲିଲେ--

ମୋ ସାଙ୍ଗରେ ବାବନା ଏଇ ବାଡ଼ି-ବଗିଚାରେ କାମ କରେ । ବୋହୂଟି ତ ଆଗରୁ ଦି' ଅକ୍ଷର ପାଠ ପଢ଼ିଥିଲା । ବୋହୂଯୋଗୁଁ ଆମର ଘରଟି ସଜଡ଼ା ହୋଇଗଲା । ବାବନାର ଦୁଇଟି ପିଲା । ଝିଅଟି ସହରରେ କଲେଜ ହଷ୍ଟେଲରେ ରହି ପଢୁଛି । ଆଉ ପୁଅଟି, ହାଇସ୍କୁଲରେ ନବମ ଶ୍ରେଣୀରେ ପଢ଼େ । ପୁଅବି ହଷ୍ଟେଲରେ । ଏବେତ ମୋର ଆଉ ବିଶେଷ କିଛି ଅସୁବିଧା ନାହିଁ । ପିଲାମାନଙ୍କ ପଢ଼ା ଖର୍ଚ୍ଚ ଆଉ ଅନ୍ୟାନ୍ୟ ଦରକାରଗୁଡ଼ିକ ମୋ'ର ଏଇଥିରୁ ଭରଣା ହୋଇଯାଉଛି ।''

ଲୋକଟି କହିଲା - 'ମଉସା, ଅପାଠୁଆ ଲୋକର ପିଲାମାନେ କ'ଣ ପାଠ ପଢୁନାହାନ୍ତି ? ଆଜିକାଲିତ ଗାଁରେ ଗାଁରେ ଇସ୍କୁଲ ।'

ମଉସା କହିଲେ - ହଁ, ତା' ସତ ଯେ ନିଜେ ପାଠ ପଢ଼ିଥିଲେ, ପାଠର ଯେପରି ମହତ୍ୱ ବୁ ଝି ହେବ, ଅପାଠୁଆ ଲୋକ ସେପରି ବୁଝିବ୍ କେମିତି ? ଗାଁରେ ଗାଁରେ ତ ଇସ୍କୁଲ ଅଛି , ତେବେ ଏତେ ପିଲା ଅପାଠୁଆ ରହୁଛନ୍ତି କାହିଁକି ? ତା'ର କାରଣ, ପାଠପଢ଼ା ସିନା ମାଗଣା, ବାପ ମା'ମାନେ ପିଲାଙ୍କ ପାଠପଢ଼ା ପ୍ରତି ସଜାଗରହିବା ସିନା ଦରକାର ।

-''ଆଛାବାପା ବୃନ୍ଦାବନ,କିଛି ଖରାପ ଭାବିବନି,ତମର ମଫସଲ ଗାଁ ସତ । ତମ ଗାଆଁରେ ତ ଇସ୍କୁଲ ଅଛି । ସେଇଠୁ ପାଠପଢ଼ି କେତେକେତେ ପିଲା ବି ଉପରକୁ ଉଠିଗଲେଣି । ତେବେ ତମପିଲାମାନଙ୍କୁ ପାଠପଢ଼ାଇଲ ନାହିଁ କାହିଁକି ? ତାର କାରଣ ତମେ ପାଠର ମୂଲ୍ୟ ବୁଝିନଥିଲ । ସତକହିବାକୁ ଗଲେ ଆମେ ବି ବୁଝି ନଥିଲୁ । ମୋ ବୋହୂ ଯେଉଁ ଟିକେ ଜ୍ଞାନର ଆଲୁଅ ପାଇଥିଲା, ସେଇ ଦୀପରୁ ଦୀପଜଳି ଆମ ଘରସାରା ଆଲୁଅ ହୋଇଗଲା ।''

ମଉସା ଗାମୁଛାରେ ମୁହଁପୋଛି ସଜାଡ଼ି ହୋଇ ବସି କହିଲେ--

ବୃନ୍ଦାବନଙ୍କ କାନରେ ଏବେ କଥାଟିକେ ଟିକେ ପଶିବାକୁ ଲାଗିଲା । ସେ ପଚାରିଲା- ସେପାଠ ସାଙ୍ଗରେ ଚାଷର କ'ଣ ସଂପର୍କ ?

ସେଇଠୁ ମଉସା କହିଲେ--ଯେମିତି ଆମର ଅଧିକାଂଶ ଚାଷୀଭାଇ ଫସଲ ଲଗାଇଲା ପରେ ପରେ ଚୁପ୍ ଚାପ୍ ବସି ରହି ଭାଗ୍ୟ ଓ ଭଗବାନଙ୍କ ଉପରେ ଛାଡ଼ି ଦିଅନ୍ତି । କଥାରେ କହନ୍ତି 'ଚାଷ ତରତର ବଣିଜ ମଠ' । ନିଜ ପିଲାପରି ଫସଲକୁ ଦେଖିଲେ ସିନା କ୍ଷେତରେ ଫସଲ ହସି ଉଠିବ । ଚାଷୀଭାଇ ସଚେତନ ହେଲେ ସିନା ଏଇଭଳି ଟାଙ୍ଗର ଭୂଇଁରେ ସୁନାର ଫସଲ ଫଳିବ ।



ତମେ ମୋ'ର ଏଇ ଯୋଉଁ ସୁନ୍ଦର ବଗିଚାଟି ଦେଖୁଛ ଏଇ ବଗିଚାରୁ ନୂଆ ନୂଆ କିସମର ପନିପରିବା ମୁଁ ବଜାରକୁ ପଠାଉଛି । ଠିକ୍ ସମୟରେ ଖତ ସାର ଦେଇପାରୁଛି । ଅନ୍ୟ ଚାଷୀମାନେ ବଜାରକୁ ନୂଆ ପରିବା ପଠାଇବା ଆଗରୁ, ମୋ ଜିନିଷ ବଜାରକୁ ଯାଏ , ତେଣୁ ମୁଁ ସବୁ ସମୟରେ ଭଲ ଦି' ପଇସା ପାଏ ।

ଅଣ୍ଟା ସିଧାକରି ମଉସା ପୁଣି କହିଲେ--ଆଛା କହିଲ ପୁଅ ଏ ସବୁ କଥା କ'ଣ ବିନା ପାଠରେ ହୋଇ ପାରନ୍ତା ? ସେ ଅଳ୍ପ ପାଠ ହେଉପଛେ, ମୁଁ ସବୁଦିନେ ଖବରକାଗଜ ପଢୁଛି । ଦେଶ ବିଦେଶର ଖବର ଜାଣି ପାରୁଛି । କୃଷି ବିଭାଗଲୋକଙ୍କ ସାଙ୍ଗରେ ଚାଷବିଷୟରେ ପରାମର୍ଶ କରି ପାରୁଚି । ଚାଷ ବିଷୟରେ ବାହାରୁଥିବା ବହିପତ୍ର ପଢ଼ା-ପଢ଼ି କରୁଛି । ସବୁଦିନେ ରେଡ଼ିଓ ଶୁଣି ପାଣିପାଗ ବିଷୟରେ ସଚେତନ ହୋଇ ଫସଲକୁ ସେହି ଅନୁସାରେ ବେଉଷଣ କରି ନେଉଚି ।''

ମଉସାଙ୍କର ଲମ୍ବା ଭାଷଣକୁ ଲୋକଟି ପିଇଗଲାପରି ଶୁଣି ଯାଉଥାଏ ।

ମଉସା ପୁଣି କଥା ଲମ୍ବେଇ ଚାଲିଥା'ନ୍ତି ।--

ହେଇ ଦେଖ, ଏଇଯୋଉଁ ବିରାଟ ପୋଖରୀ କୂଳରେ ଆମେ ବସିଛେ, ଏଇଟା ଗୋଟାଏ ଅନାବନା ଦଳ ଗଡ଼ିଆ ଥିଲା । ପ୍ରଥମେ ପ୍ରଥମେ ଏଇଥିରୁ ପାଣି ମଡ଼ାଇ ଫସଲ କରୁଥିଲି, ଖରା ଚାରିମାସ ଶୁଖି ଯାଏ । ଏଇ ପୋଖରୀକୁ ଗହୀର ଆଉ ସମତଳ କରିବା ପାଇଁ କୃଷି ବିଭାଗ ଅଫିସରଙ୍କ ପରାମର୍ଶରେ ବ୍ୟାଙ୍କରୁ ଋଣ ଆଣି ଏ ସମସ୍ତ କାମ କରିପାରିଚି । ଅନେକ ଦିନ ହେବ ବ୍ୟାଙ୍କର ସେ ଋଣ ସୁଝି ସାରିଲିଣି । ଏବେ ଚାଷରୁ ହେଉଥିବା ଟଙ୍କାକୁ ମୋର ଘରଖର୍ଚ୍ଚ ପାଇଁ ଅଳ୍ପ ରଖି ଆଉ ସବୁ ଟଙ୍କାକୁ ସେଇ ବ୍ୟାଙ୍କରେ ରଖି ଦେଉଚି । ଚୋରି ଭୟ ନାହିଁ , ପୁଣି ଜମା ଟଙ୍କାରୁ ବି ସୁଧ ମିଳୁଚି ।

--ଆଛା ମଉସା, ପୋଖରୀର ଦକ୍ଷିଣ ପାଖ ନଡ଼ିଆ ଗଛ ଗୁଡ଼ାକ, ଏତେ ବଡ଼ ବଡ଼ । କାହିଁଭଲ ଫଳ ତ ଧରିନି । ଆଉ ଏ ଛୋଟ ଗଛରେ ତ' ଫଳ ନଦି ହେଇଚି ।

ହୁଁ...ହୁଁ ...ହୁଁ... ଏଥର ମଉସା ହସିଲେ - ଆଉ କହିଲେ -'ଏଇଠି ପାଠୁଆ ଅପାଠୁଆ କଥା ବୁଝା ପଡ଼ିବ - ମୁଁ ପୋଖରୀ ଖୋଳା ପରେ କିଛି



ନଡ଼ିଆ ଗଛ ଲଗାଇବା ପାଇଁ ମନ କରି, ଆରପାଖ ଗାଁ ବ୍ରାହ୍ମଣଶାସନରୁ ନଡ଼ିଆ ଚାରା ଆଣି ରଖିଲି ।

ଗାଁ ଲୋକେ କହିଲେ - ନଡ଼ିଆ ଗଛ ଚଅଁର କାଢ଼ିଲେ ଗୋଟିଏ ମୁଣ୍ଡ ନବ । ବାବନା କହିଲା, ନାଇଁ ଆମର ନଡ଼ିଆ ଦରକାର ନାହିଁ । ବୋହୂ କହିଲା -''ଏ ଗୋଟାଏ ଅନ୍ଧ ବିଶ୍ୱାସ । ଯେଉଁମାନେ ନଡ଼ିଆ ଗଛ ଲଗାଇ ନାହାନ୍ତି, ତାଙ୍କର କ'ଣ କେହି ମରୁ ନାହାନ୍ତି ?''

ଶେଷରେ ବୋହୂର ଯୁକ୍ତିକୁ ମୁଁ ସମର୍ଥନ କଲି,ଏଇ ଦକ୍ଷିଣ ପାଖରେ ଗଛ ଗୁଡ଼ିକ ଲାଗିଲା । ଦେଶି ଚାରାଗୁଡ଼ାକ ଅନେକ ଦିନ ପରେ ଫଳଧରିଲା,ପରେ ଯେତେବେଳେ ବ୍ଲକ ଅଫିସରେ ଉନ୍ନତ ନଡ଼ିଆ ଚାରା ମିଳିବାର ଜାଣିଲି, ସେତେବେଳେ ଏଇ ତିନି ପାଖ ଲଗାଇଦେଲି । ପଛରେ ସେ ନଡ଼ିଆ ଚାରା ଲାଗି କେତେ ଫଳ ଦଉଚି , ଆଗ ଗଛ ଖାଲି ବଢ଼ିବାରେ ଲାଗୁଛି । ନଡ଼ିଆ ଗଛ କେତେ ଦିନ ହେଲା ଫଳ ଧରି ବିକିରି ହେଲାଣି, କାହିଁ ଆମ ଘରେ ତ' କେହି ମରି ନାହାନ୍ତି, ଏଇଠୁ ବୁଝ ପାଠର ଗୁଣ । ପାଠ ହିଁ ଆମକୁ ଦେଖେଇଲା ବାଟ ।

ଆଉ ଏବେ ବେଶି ଦେହବଳ ଖଟାଇ ପାରୁନି, ବଗିଚାର କାମ କରିବା ପାଇଁ ତିନି ଜଣ ସ୍ଥାୟୀ ଲୋକ ଅଛନ୍ତି । ଦରକାର ପଡ଼ିଲେ ବେଳେ ବେଳେ କିଛି ଠିକା ଲୋକଙ୍କୁ ବି ଲଗାଇଦିଏ । ଭଡ଼ାରେ ଟ୍ରାକ୍ଟରବି ମିଳୁଛି । ପ୍ରଥମ ଦଫା ଚାଷ ଟ୍ରାକ୍ଟର ଲଗାଇ କରିଦିଏ ।

ହଁରେ ପୁଅ, ଘର ପାଖକୁ ଇଲେକ୍ଟ୍ରୀ.ଲାଇନ ଆସିଗଲା ପରେ ମୁଁ ଗୋଟିଏ ପାଣି ପମ୍ପ ସରକାରୀ ସାହାଯ୍ୟ ଆଣି ବୋହୂ ନାଆଁରେ କିଣିଛି । ସେଇ ପମ୍ପରେ ପାଣି ଉଠାଇ ଛୋଟ ଛୋଟ ନାଳୀରେ ବଗିଚା ସାରା ମଡ଼ାଇ ଦିଏ । ସକାଳୁ ସଞ୍ଜ ଯାଏ ମୁଁ ଏଇ ବଗିଚାରେ ବୁଲି କାମର ବରାଦ କରେ । ଫୁରସତ୍ ଦେଖି ନିଜେ ବି କୋଦାଳ ଚଳାଇ କିଛି କିଛି କାମ କରେ । ଗଛରେ ରୋଗ ପୋକ ଲାଗିଲେ କି ନୂଆ ପ୍ରକାର ଫସଲ ଲଗାଇବାକୁ ହେଲେ ସମୟ ଦେଖି କୃଷି ବିଭାଗ ଅଫିସରମାନଙ୍କ ସାଙ୍ଗରେ ପରାମର୍ଶ କରେ । '

ଏତେ କଥା ଏକାବେଳେ ଶୁଣିବା ପାଇଁ ବୃନ୍ଦାବନର ଧୈର୍ଯ୍ୟ ନଥିଲା । ସେ କଥାକୁ ବୁଲାଇ ପଚାରିଲା ମଉସା- 'ବାବନା ଭାଇକି ତ କାଲି ସଞ୍ଜବେଳେ ମୁଁ କୋଉଠି ପାଇଲନି ?'

''ବଗିଚା ଦକ୍ଷିଣ ପାଖରେ, ସେ ଯୋଉଁ ଛୋଟ ଘରଟି ଦିଶୁଚି , ସେଇଟା ତ ଘର ପାଖରୁ ଦୂରରେ , ବାବନା ସଞ୍ଜବେଳେ ରାତି ଦଶଟାଯାଏ ସେଇ ଘରେ ବସି ପଢ଼ା-ପଢ଼ି କରେ । ନିଶ ଉଠା ବୟସରେ ପାଠ ଆରମ୍ଭ କରିଥିଲେ କ'ଣ ହେବ, ସବୁ ଦିନେ ସଞ୍ଜବେଳେ ଦି' ଘଣ୍ଟା ନ ପଢ଼ିଲେ ବାବନାର ମନରେ ଶାନ୍ତି ନାହିଁ''

କଥା କହୁ କହୁ ବେଳ ଅନେକ ହୋଇଯାଇଥିଲା । ଉତ୍ତର ପାଖ ବାଡ଼ କଡ଼ଦେଇ ସେମାନେ ଚାଲି ଚାଲି ଆସିଲାବେଳେ, ଲୋକଟି ଦେଖିଲା ବଗିଚାଟି ଖାଲି ପନିପରିବାର ବଗିଚା ନୁହେଁ, ନାନା ପ୍ରକାର ଫଳଗଛ ବି ଲାଗିଛି । ବାରମାସୀ ଫଳୁଥିବା ପିଜୁଳି ଗଛ, ଆଉ ଆମ୍ବ ଗଛ, ପଣସ ଗଛ, ପୋଖରୀ କୂଳଟା ଯାକ ନଡ଼ିଆ ଗଛ, ବାଲିଆ ଜାଗାଟାରେ କାଜୁ ବାଦାମ ଗଛ ବି ଲାଗିଛି । ମଝିରେ ମଝିରେ କଦଳୀ ବାଡ଼ି, ଅଧିକାଂଶ ଗଛରେ ବିରାଟ ବିରାଟ କଦଳୀ କାନ୍ଦି ସବୁ ଦେଖି ଲୋକଟିର ମନ ପୁରି ଉଠୁ ଥାଏ ।

ଗୁହାଳ ପାଖହୋଇ ଆସିଲାବେଳେ ଗୋଟିଏ ବିରାଟ କୂଅ ଭଳି ଗାତ ଖୋଳା ହେଉଥିବାର ଦେଖି, ଲୋକଟି ପଚାରିଲା - ''ମଉସା, ଏ'ଠି କ'ଣ ଆଉ ଗୋଟିଏ କୂଅ ଖୋଳିବ ? ''

ଆରେ ନା' ନା', ସେପାଖରେ ସେ ଯେଉଁଟା କାମ ହେଉଛି, ସିଏ କୂଅ ନୁହେଁ ଗୋଟିଏ ଗୋବରଗ୍ୟାସ ପ୍ଲାଣ୍ଟ ବସିବ ।



ଗଲା ଶୁକ୍ରବାର ଦିନ ମୁଁ ଗୋଟିଏ ଗୋବର ଗ୍ୟାସ ପ୍ଲାଣ୍ଟ ପାଇଁ ସବୁ ପରାମର୍ଶ କରି ଆସିଥିଲି ତାରି କାମ ଇଏ । ଆମର ତ ଚାରିଟା ଜର୍ସି ଗାଈ ଅଛନ୍ତି । ବ୍ୟାଙ୍କରୁ ଋଣ ଆଣି ଆଉ ଚାରିଟା ଜର୍ସି ଗାଈ କିଣିବି । ଗାଈଙ୍କ ଖାଇବା ପିଇବା ପାଇଁ ତ ଆମର ଅନେକ ଜିନିଷ ଅଛି । ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଆଉ ଖାଦ୍ୟ ବି  ଦିଆଯାଉଛି ।

ବୁଝିଲ ବାପ, ଦୁଧ ସିନା ଘରେ ବସି ବିକିରି ହୋଇଯାଉଚି, ଗାଈ ବଳଦଙ୍କର ଗୋବର ଗୁଡ଼ାକ ଆମେ ଠିକ୍ ଠିକ୍ କାମରେ ଲଗାଇ ଜାଣି ନ ଥିଲୁ ଖାଲି ବାଡ଼ିରେ ଫସଲରେ ଦେଉଥିଲୁ । ଗଲାମାସରେ ଜଣେ ବାବୁ ଆସିଥିଲେ । ସେ କହିଲେ--

ଆଠଟା ଗାଈର ଗୋବର ଆଉ ଆମର ଘରର ପାଇଖାନାକୁ ସଂଯୋଗ କରିଦେଲେ, ଗୋଟିଏ ଭଲ ଗୋବର ଗ୍ୟାସ ପ୍ଲାଣ୍ଟ ହୋଇପାରିବ । ଗ୍ୟାସରେ ଆମର ଆଲୁଅ ଜଳିବ,ରୋଷେଇ ବି ହେବ । ସେଇଥିରୁ ବାହାରୁଥିବା ଉନ୍ନତ ଧରଣର ଖତ ଆମ ବଗିଚା ସାରା ଫସଲ କିଆରୀରେ ଦିଆଯିବ । ଆଜିକାଲି ବିଜୁଳି ଶକ୍ତିର ଯୋଉଁ ଅଭାବ, କଳକାରଖାନା ଚଳିବା ପାଇଁ ବିଜୁଳି ଅଣ୍ଟୁନି । ଏଇ ଗୋବର ଗ୍ୟାସରୁ ଅନେକ ଶକ୍ତି ମିଳି ପାରିବ । ରୋଷେଇ ହେବ, ଆଲୁଅ ବି ଜଳି ପାରିବ । ''

'ମଉସା, ଏତେ କାମରେ ଲାଗୁଥିବା ଗୋବର ଗ୍ୟାସ କ'ଣ ଆମ ଦେଶୀ ଗାଈ ଗୋବରରୁ ବାହାରିବ ? ମତେ ଆଉଟିକେ ଭଲକରି କହୁନା' ଲୋକଟି ପଚାରିଲା ।

'ହଁ ହଁ ନବାହାରିବ କାହିଁକି । ଆଜି ତ ଅନେକ ଡେରି ହୋଇଗଲାଣି ।ମୁଁ ବି ସେ ବିଷୟରେ ଭଲଭାବରେ ତୁମକୁ ବୁଝାଇ ପାରିବିନି । ଆମର ପ୍ଲାଣ୍ଟ ବସିସାରୁ ତୁମକୁ ଦେଖାଇ ବୁଝାଇ ଦେବି ।' ମଉସା ଉତ୍ତର ଦେଲେ ।

ଧୋବ କଇଁଫୁଲିଆ ଜହ୍ନ ପଡ଼ିଥାଏ । ମଜୁରିଆମାନେ ଧୋଇଧାଇ ହୋଇ ସେ ପାଖରେ ଯାଇ ମେଲାଘର ବାରଣ୍ଡାରେ ବସିଲେଣି । ସ୍ଥାୟୀ ଚାକର ତିନି ଜଣରୁ ଦୁଇଜଣ ଗାଈଙ୍କୁ ଖାଇବା ପିଇବା ଦେଇ ଗାଈଦୁହାଁ ଆରମ୍ଭ କରିଦେଲେଣି । ଦୁଧବେପାରୀମାନେ ଆସି ଦୁଆର ମୁହଁରେ ବସିଛନ୍ତି । ବୋହୂ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରୁଛନ୍ତି ।

ଲୋକଟି ମଉସା ସାଙ୍ଗରେ କଥାବାର୍ତ୍ତା ହୋଇ ଆସୁ ଆସୁ ମଉସା କହିଲେ- 'ମୁଁ ଟିକେ ରାତି ଖାଇବା କାମଟା ସଅଳ ସଅଳ ସାରି ଦିଏ, କାରଣ ଭୋରୁ ଭୋରୁ ଉଠିବାକୁ ହୁଏ । ସକାଳୁ ସକାଳୁ ବହୁତ କାମ । ସକାଳୁ ପରିବା ବେପାରୀ, ଦୁଧ ବେପାରୀ ଆସି ପହଁଚିବେ ।

ବାବନା କଥା ଅଲଗା, ସେ ତା'ର ବଗିଚା କାମପରେ ପରିବା ପତ୍ର ତୋଳାତୋଳି ସାରି, ଉଷୁମଦୁଧ ଗିଲାସେ ପିଇ ରାତି ସାତଟା ଆଠଟା ବେଳକୁ ପଢ଼ି ବସେ । ଶେଷରେ ବାବନା ଖିଆପିଆ କରେ ।

-୦-

## ତିନି

ବୃନ୍ଦାବନର ସ୍ତ୍ରୀ ଟି ଏଇ ତିନିଦିନ ଭିତରେ ବେଶ କିଛି ବୁଝି ପାରିଲାଣି । ପିଲାମାନେ ବି ପ୍ରଥମେ ଯେପରି ଦୁଷ୍ଟାମି କରି ଚଗଲା ହେଉଥିଲେ ଏବେ ସେପରି ହେଉ ନାହାନ୍ତି ।

ସକାଳୁ ରାତି ଯାଏ ବୋହୂଟି କାମରେ ଲାଗିଥାଏ । କେତେବେଳେ ବି ମୁହଁରେ ବ୍ୟସ୍ତଭାବ ନାହିଁ କି ବିରକ୍ତି ନାହିଁ । ଟଙ୍କା ପଇସାର ହିସାବ ରଖିବା,ରୋଷେଇବାସ ଠାରୁ ଆରମ୍ଭ କରି ଯାବତୀୟ ଘରକାମ ସେ କରି ଚାଲିଥାଏ । ଏତେ ବ୍ୟସ୍ତ ଭିତରେ ବୃନ୍ଦାବନର ସ୍ତ୍ରୀ ଓ ପିଲାପିଲିଙ୍କୁ ବି ଭଲମନ୍ଦ କଥା ପଚାରିବାକୁ ଭୁଲିନି ।

ଏଠାକୁ ଆସିବାର ଦୁଇଦିନ ପରେ ବୃନ୍ଦାବନର ସ୍ତ୍ରୀ ବୋହୂକୁ ରୋଷେଇ ବାସରେ ସାହାଯ୍ୟ କଲା । ଉଭୟ ମିଳିମିଶି କାମ କଲାବେଳେ କେତେକଥା ପଡ଼େ ଢେଙ୍କିଶାଳରୁ ଢେଙ୍କାନାଳ ଯାଏ । ପ୍ରଥମ ଥର ପାଇଁ ଦେଖା ସାକ୍ଷାତ ହେଲେ ବି ଲାଗୁଥାଏ ଯେପରି କାହିଁ କେତେ ଦିନର ଜଣାଶୁଣା ।

କଥା ହେଉ ହେଉ ବୃନ୍ଦାବନର ସ୍ତ୍ରୀ କହିଲା-- 'ଅପା, କାଲି ସଂଜବେଳେ ମଉସାଙ୍କ ପାଇଁ ପିଠା କରିବା । ତମର ତ ଏତେ କାମ,ଏ ପିଠାପଣା କରିବା ପାଇଁ ବେଳ କାହିଁ ? ମୁଁ ତ ଖାଲି ବସିଛି,ଆସନ୍ତାକାଲି ଦିନବେଳା ସବୁ ଯୋଗାଡ଼ କରିଦେବି ।'

ବୋହୂ ଟି ହସି ହସି କହିଲା-- 'ହଁ ଲୋ ବେଲ, ଏ କାମରୁ ଛୁଟଣ ମିଳୁଛି କେତେବେଳେ । ପିଲା ଦି'ଟା ହଷ୍ଟେଲରୁ ଘରକୁ ଆସିଲେ ବେଳେବେଳେ ପିଠାପଣା କରେ । ବାପାଙ୍କର କ'ଣ ପିଠାପଣାପାଇଁ ମନ ନ ଥିବ, ଏତେ କାମ ଭିତରେ କରିବାକୁ ତର କାହିଁ ? ହଉ ଭଲ କଥା ମନେ ପକାଇଲୁ,ଘରେ ତ ଅରୁଆ ଚାଉଳ,ଗୁଡ଼,ନଡ଼ିଆ ସବୁ ଅଛି । ସମସ୍ତଙ୍କ ପାଇଁ ପିଠା କର । ବାସନା ଚାଉଳ,ଚିନି,କ୍ଷୀର ଅଛି । କାଲି ରାତିରେ ସମସ୍ତେ ଖିରି ପିଠା ଖାଇବା ।'

ଦୁଇ ଯାଆ ବସି କଥାବାର୍ତ୍ତା ହେଉଛନ୍ତି ଏଇ ସମୟରେ ମଉସା ପୁତୁରା ଘର ଭତରକୁ ଆସିଲେ । ବୋହୂଟି କହିଲା --ବେଲ, ରୋଷେଇବାସ ତ ସରି ଯାଇଛି, ଯା ବାପାଙ୍କୁ ଆଉ ବୃନ୍ଦାବନକୁ ଖାଇବାକୁ ଦେ ।

ବେଲ ଆସନ ପକାଇ ଖାଇବାକୁ ଦେଲା,

ତା'ପରେ ମଉସା ପୁତୁରା ମୁହଁ ହାତ ଧୋଇ ଆସି ଖାଇବାକୁ ବସିଲେ । ଲୋକଟି ଦି'ଦିନ ହେଲା ଦେଖି ଆସୁଛି , ବେଶ ଭଲ ଆଉ ବହୁତ ବହୁତ ତରକାରୀ ହେଉଛି । କି' ସୁଆଦିଆ ମାଛ ତରକାରୀ । ଖାଇବା ମଝିରେ ସେ ମଉସାଙ୍କୁ ପଚାରିଲା --

- 'ଏ ମାଛ ସବୁ କେତେ ଦରରେ କିଣିଛନ୍ତି ମଉସା ? '

ମଉସା ମଧୁରିଆ ହସ ହସି କହିଲେ, 'ବଗିଚା ମଝିରେ ଆମେ ଯେଉଁ ପୋଖରୀ କୂଳରେ ବସିଥିଲେ, ଏ ସେଇ ପୋଖରୀ ମାଛ । ସରକାରଙ୍କ ମାଛ ଚାଷ ବିଭାଗରୁ ମାଛ ଜାଆଁଳ ମୁଁ କିଣିଦେଇ ପୋଖରୀରେ ଛାଡ଼ି ଦେଇଛି । ପୋଖରୀତ ବହୁତ ଗଭୀର କରାଯାଇଛି । ପୋଖରୀ ମାଛରୁ ବରଷକର ମାଛ ଖାଇବା ଚଳିଯାଏ , ଆଉ ମାଛ ଚାଷରୁ ବେଶ୍ ଭଲ ଦି' ପଇସା ମିଳେ ।

ଟଟ୍କା ମାଛ ଆଉ ସଜ ପନିପରିବା ତରକାରୀ ଖାଇ ବୃନ୍ଦାବନର ମନରେ ଚେତନା ପଶିଲା । ପୁଣି ରାତିରେ ଶୋଇବାକୁ ଗଲାବେଳେ, ମଉସା ବୁଢ଼ା ସମସ୍ତଙ୍କୁ କିଛି ଉଷୁମ ଦୁଧ ପିଇବାକୁ ଦେଲେ । ଦୁଧ ପିଇ ସମସ୍ତେ ଆରାମରେ ଶୋଇ ଗଲେ ।

ଲୋକଟି ରାତିରେ ସପନ ଦେଖିଲା - ଛାଡ଼ି ଆସିଥିବା ଗାଁର ଚାଳିଆ ଘରଟିରେ ଛାଞ୍ଚୁଣୀ ପହଁରା ଦୁଇଟି ଗୀତ ବୋଲି ନାଚ କରୁଛନ୍ତି ---

ଯେଣେ ଇଚ୍ଛା ତେଣେ ଯା' ...
କରମ ଘେନି ବୁଲୁ ଥା '...

ଏ ଗୀତ ଶୁଣି ଲୋକଟିର ନିଦ ଭାଙ୍ଗିଗଲା ।

ସେତେବେଳକୁ ସକାଳହୋଇ ସାରି ଅନେକ ବେଳ ହୋଇଗଲାଣି । ମୂଲିଆ ମଜୁରିଆମାନେ କାମ କରିବାକୁ ଆସି ପହଞ୍ଚି ଗଲେଣି । ମଉସା ସକାଳୁ ପୁଅ ସହିତ ବଗିଚାରୁ ଗତ ସଂଜରେ ତୋଳା ହୋଇଥିବା ପରିବାପତ୍ର ବେପାରିମାନଙ୍କୁ ଦେଇ,ଗାଈଦୁହାଁ, ଦୁଧ ବିକା କାମ ଶେଷ କରି ସାରି ଆସି ଆଉଟା ଉଷୁମ ଦୁଧ ପିଉଛନ୍ତି ।

ଲୋକଟି ଉଠି ଘଡ଼ିଏ ଏପଟ ସେପଟ ହେଲା । ଚାରିଆଡ଼େ ଗହଳିଚହଳି ହଇଚଇ ଲାଗିଥିବା ଦେଖି ଲଜ୍ଜାରେ ମୁହଁ ଟେକି ପାରିଲା ନାହିଁ। ମନେମନେ ଭାବୁଥିଲା ଆଜି ତାକୁ କି'ଏ ଗାଳି ଦିଅନ୍ତା।କି,ତାଗିଦା କରନ୍ତା କି, କାନମୋଡ଼ି ଦି ଥାପଡ଼ ମାରନ୍ତା। କେହି ଜଣେ ହେଲେବି ସେପରି କଲେନି। ଓଲଟି ବାବନା ଭାଇ ଡାକିଲା---

--'ବୃନ୍ଦାବନ ,ଇଆଡ଼େ ଆ। ଆମ ଘରେ ତ କାହାର ଚା ପିଇବା ଅଭ୍ୟାସ ନାଇଁ । ଏଇ ଥଣ୍ଡାଦିନେ ସକାଳୁ ସକାଳୁ ଉଷୁମ ଦୁଧ ଗିଲାସେ ଗିଲାସେ ପିଉ,ଖରାଚାରିମାସ ସକାଳୁ ଘୋଳ ଦହି ପିଆଯାଏ। କାମିକା ଲୋକ ତ ନିଜେ ନ ଖଟିଲେ ବାହାର ଲୋକଙ୍କୁ ଜଗି ହେବନି ।'

ବାବନା ଭାଇର ଏ କଥା ବୃନ୍ଦାବନର ମନକୁ ଆଉରି ଘାଣ୍ଟି ପକାଇଲା । ତାକୁ ଲାଗିଲା ଯେପରି ସମସ୍ତେ କେବଳ ତାଆରି ଆଡ଼କୁ ଚାହୁଁଛନ୍ତି । ମୂଲିଆ,ମଜୁରିଆ,ଦୁଧବାଲା,ଗାଈ,ବଳଦ,ଗଛ,ବିଲେଇ,କୁକୁର ସମସ୍ତେ ଯେପରି ତାକୁ ଅନେଇ ଅନେଇ ଖତେଇ ହଉଛନ୍ତି । ତାକୁ ଏମିତି ଲଗିଲା ଯେ ଛୋଟ ଛୋଟ ଅଧା ଲଙ୍ଗଳା ପିଲାଗୁଡ଼ାକ ଜିଭ ଦେଖାଇ ଖତେଇ ହୋଇ ତା ଗଂଜେଇ ଚିଲମଟାକୁ ଟାଣି ପକାଉଛନ୍ତି । ତା ମୁଣ୍ଡ ଯେପରି ଘୂରିଗଲା । ତାକୁ ଲାଗିଲା ସମସ୍ତେ ଯେପରି ତାକୁ ଦୟା ଦେଖେଉଛନ୍ତି। ଏଇଟା ତାକୁ ଆଉରି ବାଧିଲା ।

ବୃନ୍ଦାବନ ଆଉ ଥୟ ଧରି ପାରିଲାନି। ଦାଣ୍ଡ ବାରଣ୍ଡାରୁ ମଉସା ଓ ବାବନା ବସିଥିବା ବଉଳଗଛମୂଳ ଚଉତରାକୁ ଝପଟି ଆସି ମଉସାଙ୍କ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲା । ଅଣ୍ଟାରୁ ଗଞ୍ଜାଇ ଚିଲମଟିକୁ ବାହାର କରି ମଉସାଙ୍କ ଆଗରେ ପଥରରେ ଛେଚି ଦେଇ କହିଲା--

''ମଉସା, ଆପଣ ଆଜି ମୋ'ର ଆଖି ଖୋଲି ଦେଇଛନ୍ତି । ମୋ'ର ଅଳସୁଆମି ଓ ବୋକାମି ଯୋଗୁଁ , ସବୁ ହରାଇ ମୋ'ର ଏ ଅବସ୍ଥା। ସେ ଗାଁ ଛାଡ଼ିବା ମୋର ଆଉ ଦରକାର ନାହିଁ।''

ବୃନ୍ଦାବନର ଏ ଅବସ୍ଥା ଦେଖି ବାବନା ଚମକି ପଡ଼ିଲା।

ମାତ୍ର ମଉସା କଥାଟାକୁ ଠିକ୍ କଳିନେଲେ। ବୃନ୍ଦାବନ ଭିତରେ ଥିବା ମଣିଷ ପଣିଆ ଯେ ଚେଇଁ ଉଠିଛି,ଏ କଥା ସେ ଭଲ ଭାବରେ ବୁଝି ପାରିଲେ ।



ଲୋକଟିକୁ ଉଠାଇ ମୁହଁ ହାତ ଧୁଆଇଲା ପରେ, ମଉସା ପାଖରେ ବସାଇ ପୁଣି ବୁଝାଇଲେ -

''ହେଇ ଦେଖ ବୃନ୍ଦାବନ - ଆଉ କିଛିଦିନ ଏଠାରେ ରହି ତୁ ଗାଁକୁ ଫେରିଯା,କିଛି ଦିନ ପରେ ଏକୁଟିଆ ଆସିବୁ, ମୁଁ ନିଜେ କିଛି ସାହାଯ୍ୟ କରିବି । ଆଉ ସରକାରଙ୍କ ଭୂମିହୀନ କୃଷକ ସହାୟକ ଯୋଜନା ଅନୁସାରେ ତୋ ପାଇଁ ଋଣ ତଥା ସାହାଯ୍ୟର ବନ୍ଦୋବସ୍ତ କରାଇଦେବି ।''

ତା'ପରେ ଖାଇ ପିଇ , ମଉସାଙ୍କଠାରୁ କିଛି ଜିନିଷ ସାହାଯ୍ୟ ଆଣି, ନିଜର ପରିବାର ଧରି ବୃନ୍ଦାବନ ସେ ଗାଁକୁ ଫେରି ଆସିଲା ।

ଆଗରେ ଗହଳ ଚହଳ କରି ପିଲାମାନେ ଯାଉଥା'ନ୍ତି , ପିଲାମାନଙ୍କ ପଛେ ପଛେ ଛୋଟ ପିଲାଟିକୁ ଧରି ସ୍ୱାମୀ-ସ୍ତ୍ରୀ ଉତ୍‌ଫୁଲ୍ଲ ମୁହଁରେ ଚାଲିଥା'ନ୍ତି, ଗତ ରାତିର ସପନ ବୃନ୍ଦାବନର ଆଖି ଆଗରେ ନାଚି ଯାଉଥାଏ- ଛାଞ୍ଚୁଣୀ - ପହଁରା ନାଚ କରି ଗୀତ ଗାଉଥା'ନ୍ତି ---

ଯେଣେ ଇଚ୍ଛା ତେଣେ ଯା ...



# ଯେଣେ ଇଚ୍ଛା ତେଣେ ଯା

ଡ଼. ଶ୍ରୀଚରଣ ମହାନ୍ତି

(ଜାତୀୟ ପୁରସ୍କାର ପ୍ରାପ୍ତ)



କୋଣାର୍କ ପବ୍ଲିଶର୍ସ

ତୁଳସୀପୁର, କଟକ-୮